# ପୃଥିବୀର ଲୋକକଥା

ସାନ୍ତାଳ ଲୋକକଥା

( ଦ୍ୱିତୀୟ ଭାଗ )

ଶ୍ରୀ ଲକ୍ଷ୍ମୀଧର ମହାନ୍ତ, ବି. ଏସ୍‌ସି; ଏଲ୍. ଏଲ୍. ବି.
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତ, ଏମ୍. ଏ, ବି. ଇଡ.

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

Santal Lokakatha

Dwitiya Bhaga

# ପୃଥିବୀର ଲୋକକଥା

## ସାନ୍ତାଳ ଲୋକକଥା

ଦ୍ୱିତୀୟ ଭାଗ



ପ୍ରକାଶକ :

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**

ପୋ-ଢଙ୍କାଳ, ଜି-ପୁରୀ

ଦ୍ୱିତୀୟ ସଂସ୍କରଣ :

ପ୍ରଥମାଷ୍ଟମୀ, ୨୦୦୭

ମୁଦ୍ରଣ—ଆଦିତ୍ୟ ପ୍ରିଣ୍ଟର୍ସ

ଅଲିଶା ବଜାର, କଟକ

ଫୋନ୍ ନଂ—୯୯୩୭୨୭୯୩୦୭, ୯୯୩୭୭୭୪୦୨୮

ମୂଲ୍ୟ : ଦଶ ଟଙ୍କା ମାତ୍ର ୧୦-୦୦

# ସୂଚୀପତ୍ର

**ବିଷୟ** | **ପୃଷ୍ଠା**





# ନିବେଦନ

ଆଜ ଆମେ ଦୁର୍ଦ୍ଦିନର ସମ୍ମୁଖୀନ ।

ଆମେ ଏଠାରେ କେତେକାଳ ହେଲା ଅଛୁ ତାହା ନିର୍ଣ୍ଣୟାତୀତ । ପ୍ରସ୍ତର ସଭ୍ୟତା ଏହାକୁ ଅଶୀ ହଜାର ବର୍ଷ ତଳକୁ ଲମ୍ବାଇ ଦେଲଣି ।

ଆର୍ଯ୍ୟମାନେ ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ ଏଠାକୁ ଆସିଥିଲେ । ତାର ବହୁ ପୂର୍ବରୁ ମୁଣ୍ଡାମାନେ ଉତ୍ତର ପୂର୍ବ ଦିଗରୁ ଆସିଥିଲେ । ସାନ୍ତାଳମାନେ ମୁଣ୍ଡା ସଂପ୍ରଦାୟର ଅଂଶ ବିଶେଷ ।

ମଣିଷର ହେତୁ ପାଇଲାଦିନୁ କପରି ସେ ସୁସ୍ଥ ପରିବେଶରେ ଭଲରେ ରହିବ, ସେଥିପାଇଁ ତାର ଚିନ୍ତା । ଅଭିଜ୍ଞ ମଣିଷ ତାର ଅଭିଜ୍ଞତା ଓ ଚିନ୍ତାଧାରା ଉତ୍ତର ପୁରୁଷକୁ ଉପଦେଶ ମାଧ୍ୟମରେ ଦିଏ । ସବୁ ମଣିଷ ଲଙ୍ଗଳାରେ ଅସୁନ୍ଦର । ସୁନ୍ଦର କରିବାକୁ ତାର ପୋଷାକ ଲୋଡ଼ା । ସେହିପରି ସବୁ ଉପଦେଶ ବିରକ୍ତକର । ତାର ପରିବେଷ ଚିତ୍ତାକର୍ଷକ ଗପ ମାଧ୍ୟମରେ ହୋଇଛି । ସେସବୁ ହେଲା ଲୋକକଥା । ଏହାର ପ୍ରସାର ଦରକାର ।

ସାନ୍ତାଳମାନେ ଜଙ୍ଗଲରେ ରହନ୍ତି । ସ୍ୱଷ ପ୍ରକୃତ ସେମାନେ ସ୍ୱଚ୍ଛନ୍ଦ । ଶୀକାର ତାଙ୍କର ଜୀବିକା । ସେମାନେ ମଜାକର ଆଶ୍ରମରେ ଖୁସିବାସୀରେ ରହିବାକୁ ଭଲ ପାଆନ୍ତି । ସେମାନଙ୍କ ଲୋକକଥା ଉନବିଂଶ ଶତାବ୍ଦୀର ଶେଷ ଭାଗରେ ସେସିଲ ହେନେରି ବୋମ୍ପାସ ଆଇ ସି ଏସ୍ ଇଂରାଜୀରେ ଅନୁବାଦ କରିଥିଲେ । ତାହା ଓଡ଼ିଆରେ ରୂପାନ୍ତରିତ କରାଯାଉଛି ।

ଏହି ଉଦ୍ୟମର ସଫଳତା ପାଇଁ ଆପଣଙ୍କର ସାହାଯ୍ୟ ସହାନୁଭୂତି ଓ ସଦିଚ୍ଛା ଦରକାର ।

—ଲକ୍ଷ୍ମୀଧର ମହାନ୍ତି

# ଚେଳ ଓ ତାର ପୁଅମାନେ

ବହୁଦିନ ତଳର କଥା । ଜଣେ ଚେଲ ଥିଲା । ତାର ପାଞ୍ଚ ପୁଅ । ସମସ୍ତେ ବିବାହିତ । ଏକା ଘରେ ରହନ୍ତି । ଏକା ଚୁଲି ଚଳେ ଏବଂ ଏକା ଭଣ୍ଡାରେ ସମସ୍ତେ ରହନ୍ତି । ଏ ପ୍ରକାର ବ୍ୟବସ୍ଥାରେ ବୋହୂ-ମାନେ ଅସନ୍ତୁଷ୍ଟ । ସ୍ୱାମୀମାନେ ତ ତାଙ୍କ ହାତରେ । ତେଣୁ ସେମାନେ ଭିନ୍ନ ହେବାକୁ ସେମାନଙ୍କର ସ୍ୱାମୀମାନଙ୍କୁ ପ୍ରବର୍ତ୍ତାଇଲେ ।

ଚେଲଟି ଘରର କର୍ତ୍ତା । ଝିପ ତାର ଘର ଠାଣ । ପୁଅମାନେ ତା କଥାରୁ ବାହାରକୁ ଯିବାକୁ ସେ ଏ ପର୍ଯ୍ୟନ୍ତ ଛାଡ଼ି ନାହିଁ । ବୁଢ଼ା ମୁହାଁମୁହିଁ ହେବାକୁ ପିଲମାନଙ୍କର ଘର ଭୟ । କିନ୍ତୁ ସ୍ତ୍ରୀ କଥାରେ ସେମାନେ ଭୁଣ୍ଡ ଖୋଲିବାକୁ ବାଧ୍ୟହେଲେ । ବାପାଙ୍କୁ ଭିନ୍ନ ହେବା କଥା କହିଲେ । ପ୍ରଥମେ ବାପା ଏସବୁ କଥା ପୁଅ-ମାନଙ୍କ ଠାରୁ ଶୁଣିଲା ସିନା, କିନ୍ତୁ କିଛି ଉତ୍ତର ଦେଲା ନାହିଁ । କଥାଗୁଡ଼ାକ ଯେପରି ତା'ର ଏ କାନରେ ପଶି ଆର କାନରେ ବାହାରିଗଲା । ପୁଅମାନେ ବାପର ନୀରବତାରୁ ବାପା ଯେ ସେମାନଙ୍କ କଥାରେ ଗୁରୁତ୍ୱ ଦେଉ ନାହିଁ, ଏହା ଅନୁଭବ କଲେ । ସେଇ କଥା ସେମାନେ ତାଙ୍କ ସ୍ତ୍ରୀମାନଙ୍କ ଆଗରେ କହିଲେ ।

ସ୍ତ୍ରୀମାନେ ତ ଜିଦ୍‌ଖୋର । ଥରେ ଗୋଟିଏ କଥା ଧରି ବସିଲେ, ଶେଷ ନହେବା ପର୍ଯ୍ୟନ୍ତ ସେମାନେ ଅସ୍ଥିର । ତାକୁ ଛାଡ଼ନ୍ତି ନାହିଁ । ତା'ର ପରିଣତି କ'ଣ ହେବ, ତାହା ସେମାନେ ଭବିଷ୍ୟରକୁ ବି ନଅନ୍ତି ନାହିଁ । ଭିନ୍ନ ହେବା ପାଇଁ ସ୍ୱାମୀକୁ ତାଡ଼ନା ଦେବାକୁ ସେମାନେ ପଛାଇଲେ ନାହିଁ । ସେମାନେ ବେଶୀ ବାଧ

କରିବାରୁ ପୁଅମାନେ ବାପାକୁ ସମ୍ପତ୍ତି ବାଣ୍ଟି ଭିନ୍ନ କରିଦେବାକୁ ବାଧ୍ୟ କଲେ । ବାପା କହିଲା—"ପୁଅରେ ତୁମେ ଯଦି ମୋ ପାଇଁ ଗୋଟିଏ କାମ କରିଦେବ, ମୁଁ ତମକୁ ସାଥୀ ସାଥୀ ଭିନ୍ନ କରି ଦେବି । ତୁମେମାନେ ଯାଅ । ଦୁଇ ବିଘିଣ୍ଡି ମୋଟର ଦୁଇ ଫୁଟ୍ ଲମ୍ବର କାଠିଟିଏ ଆଣ । ତାକୁ ଯଦି ମୋ କଥା ରଖି ଭାଙ୍ଗିଦେବ, ତେବେ ତାହାହେଲେ ମୁଁ ତମ କଥା ରଖି ସମସ୍ତଙ୍କୁ ଭିନ୍ନ କରି ଦେବି ।"

ପୁଅମାନେ ବାପ କହିଥିବାନୁସାରେ କାଠଟିଏ ଆଣିଲେ । ଏପଟ ସେପଟ ବହୁତ କଲେ । ସମସ୍ତେ ମିଶି କାଠଟି ଭାଙ୍ଗିବାପାଇଁ ଖୁବ୍ ଚେଷ୍ଟା ବି କଲେ । ସବୁ ଚେଷ୍ଟା ନିଷ୍ଫଳ । ବ୍ୟର୍ଥ । ସେମାନେ ଘରକୁ କୁରାଢ଼ୀ ଆଣିବାକୁ ବାହାରିଲେ । ବାପା କହିଲେ—"ଅସ୍ତ୍ର ପ୍ରୟୋଗ କରିବାର କଥା ତ ନାହିଁ । ତେଣୁ କୁରାଢ଼ୀ ଆଣିବାର ପ୍ରଶ୍ନ କାହିଁକି ଉଠୁଛି ? ଦେଖିଲ ତ ଏଇ କାଠ ଖଣ୍ଡକ ତୁମେ ଭାଙ୍ଗି ପାରିଲ ନାହିଁ । କିନ୍ତୁ ଆମେ ବାପ ପୁଅ ମିଶି ଛ'ଜଣ । ଏ କାଠ ଖଣ୍ଡିକ ଛ' ଭାଗ କରି ଦିଅ ।"

ବାପାଙ୍କ କଥାନୁସାରେ କାଠଟି କୁରାଢ଼ୀରେ ଚିରି ଛ' ଭାଗ କରାଗଲା । ତାପରେ ବାପା କହିଲେ—"ପ୍ରତି ଖଣ୍ଡକ ଭାଙ୍ଗି ଦିଅ ।" ପିଲାମାନେ ଅନାୟାସରେ ପ୍ରତି ଖଣ୍ଡ ଭାଙ୍ଗି ଦେଲେ । ବାପା ତେଣୁ କହିଲା—"ଏକାଠି ରହିଲେ ଆମର ଲାଭ କ'ଣ ? ଆଜି ଅଲଗା ରହିଲେ କ୍ଷତି କ'ଣ ? ଉଭୟ କଥା ତୁମେ ହୃଦୟଙ୍ଗମ କରି ଭିନ୍ନ ହେବା କଥା ବୁଝ ।"

ପିଲାମାନେ କହିଲେ—"ଆମ ସମ୍ପତ୍ତି ଏକାଠି ରହୁ । ଆମେ କିନ୍ତୁ ଅଲଗା ଅଲଗା ରାନ୍ଧି ଖାଇବା । ଏହା ଆପଣଙ୍କ ବୋହୂମାନଙ୍କର ଇଚ୍ଛା ।"

ବୁଢ଼ା କହିଲା—"ତମକୁ ଭିନ୍ନାନ୍ନ କରିଦେଲେ ଆଜ ସମ୍ପତ୍ତି ନ ଦେଲେ, ଲୋକମାନେ ମୋତେ କୃପଣ ଏବଂ ଲୋଭୀ ବୋଲି କହିବେ । ବୁଢ଼ା ବୟସରେ ମୁଁ ଏ ବଦନାମ ନେବାକୁ ରାଜି ନୁହଁ । ତାପରେ ସେ ପୁଅକୁ ଭିନ୍ନ କରିଦେଇ ଯାହା ଭାଗରେ ଯାହା ସମ୍ପତ୍ତି ପଡ଼ିଲା, ତାକୁ ଦେଇଦେଲା । ସେମାନେ ଅଲଗା ରହିଲେ ସତ କିନ୍ତୁ ଦିନକୁ ଦିନ ତାଙ୍କର ଲାଭ ଅପେକ୍ଷା କ୍ଷତି ବେଶୀହେଲା । ଅଳ୍ପଦିନ ପରେ ସେମାନେ ଗରିବ ହୋଇଗଲେ । ଏମିତିକି ତାଙ୍କ ଘରେ ଖାଇବାକୁ ପିନ୍ଧିବାକୁ ଯଥେଷ୍ଟ ନ ଥିଲା । ବାପ ମା'ଙ୍କ ଅବସ୍ଥା ବି ତଦ୍ରୂପ ।

ଦିନେ ବାପ ସବୁ ପୁଅ ବୋହୂଙ୍କୁ ଡାକି ଏକାଠି ବସାଇଲା । ତାଙ୍କୁ କହିଲା—"ମୋ କଥା ମାନିଥିଲେ, ଆମର ଅବସ୍ଥା ଏପରି ହୋଇ ନ ଥାଆନ୍ତା । ଯାହା ହେବାର ତ ହେଲାଣି, ମୁଁ ତମକୁ ଗୋଟିଏ କୂଟ ପ୍ରଶ୍ନ ପଚାରୁଛି । ତୁମେମାନେ ଏ ବିଷୟରେ ଚିନ୍ତା କର । ଗୋଟିଏ ଜାଗାରେ ସାତୋଟି କୂଅ ଥିଲା । ସେଥିରୁ ଗୋଟିଏ ପାଣିରେ ପୂର୍ଣ୍ଣ । ଆଉ ଛଅଟି ଶୁଖିଲା । ପାଣିଭରା କୂଅରୁ ପାଣି ନେଇ ବାକି ଛଅଟିରେ ପୂରାଇବାରୁ ଛଅଟି ଯାକ କୂଅ ପୂର୍ଣ୍ଣ ହୋଇଗଲା । ପ୍ରଥମ କୂଅଟି ଶୁଖି ପଡ଼ିଲା । ଛଅଟି କୂଅରୁ ପାଣି ନେଇ ପ୍ରଥମ କୂଅରେ ଢଳାଗଲା । କିନ୍ତୁ ପ୍ରଥମ କୂଅଟି ଜମା ପୂରିଲା ନାହିଁ । ଏହାର ଅର୍ଥ କ'ଣ ?

ପିଲାମାନେ ବସି ଭାବିଲେ । କିଛି ଉତ୍ତର ଦେଇ ପାରିଲେ ନାହିଁ । ବୁଢ଼ା କହିଲା—"ଉତ୍ତର ଏବେ ଶୁଣ । ଗୋଟିଏ ଲୋକର ଛଅ ପୁଅ ଥିଲେ । ସେ ସେମାନଙ୍କୁ ପେଟପୂରା ଖୁଆଇ ପିଆଇ ବଢ଼ାଇଲା । ସେମାନେ ବଡ଼ ହୋଇଗଲେ । ବାପା ଏବେ ବୁଢ଼ା ।

କାମ ଦାମ କରିବାକୁ ଅକ୍ଷମ । ତିନି ପୁଅ ଯାକ ଅଲଗା । ସେମାନେ ଯାହା କଲେ, ସବୁ ଅଲଗା ଅଲଗା । ବୁଢ଼ାର ପେଟ ପୂରେ ନାହିଁ । ସେ ଅଧା ପେଟରେ ରହେ ।

ଏ କଥା ସତ୍ୟ ଯେ ପୁଅମାନେ ପ୍ରକୃତରେ ବୁଢ଼ାର ଖବର ଅନ୍ତର ବୁଝୁ ନଥିଲେ । ସାହାଯ୍ୟ ତ ଦୂରର କଥା । ଏକଥା ଶୁଣି ସେମାନେ ଲଜ୍ଜିତ । ତାପରେ ଭାଇମାନେ ତାଙ୍କ ଭିତରେ କଥାବାର୍ତ୍ତା ହୋଇ ସ୍ଥିରକଲେ ଯେ, ବାପ ମା' ବଞ୍ଚିଥିବା ପର୍ଯ୍ୟନ୍ତ ସେମାନେ ଏକାଠି ରହିବେ । ସେ ନ ମରିବା ପର୍ଯ୍ୟନ୍ତ ଭିନ୍ନ ହେବେ ନାହିଁ ।

# ଝିଅଟି ତାର ସାହାଯ୍ୟକାରୀମାନଙ୍କୁ ପାଇଲା

ସାତ ଭାଇରେ ଭଉଣୀଟିଏ । ଭାଇମାନେ ବିବାହିତ । ଭଉଣୀଟି ବାଡ଼ୁଅ । ଥରେ ସାତଭାଇଯାକ ବଣିଜ କରିବା ପାଇଁ ବିଦେଶକୁ ବର୍ଷକ ପାଇଁ ଗଲେ । ଘରେ ସାତ ଭାଉଜ ଆଉ ନଣନ୍ଦ ।

ସାତ ଜା'ଙ୍କର ନଣନ୍ଦ ସାଥିରେ ପଟେ ନାହିଁ । ଭାଇମାନେ ତ ଅନୁପସ୍ଥିତ । ତେଣୁ ଭାଉଜମାନଙ୍କର ନଣନ୍ଦକୁ ହଇରାଣ କରିବାକୁ ସୁବିଧା ମିଳିଗଲା । କିନ୍ତୁ ସାହି ପଡ଼ିଶା ତ ଅଛନ୍ତି । ବିନା କାରଣରେ ହଇରାଣ କଲେ, ଲୋକନିନ୍ଦା ହେବ । ତେଣୁ ସେଥିପାଇଁ ଗୋଟିଏ କା ରଣ ଦରକାର । ତାହାହେଲେ କେହି କିଛି କହିବାର ବାଟ ନ ଥିବ । ସେମାନେ ସେଥିପାଇଁ ଗୋଟିଏ

କଣାମସ୍ଣ ପାଠିଆ ନଣନ୍ଦକୁ ଦେଲେ । କହିଲେ—"ଏ ମାଠିଆଟି ନେଇଯା । ଝରଣାରୁ ପ୍ରକର ମାଠିଆଏ ପାଣି ଆଣିବୁ । ନଇଲେ ତୋ ଖାଇବା ବନ୍ଦ ।"

ନଣନ୍ଦ ଦେଖିଲା—ଏପରି ମାଠିଆରେ ପାଣି ପୂରାଇ ଉପରକୁ ଉଠାଇବା ବେଳକୁ ପାଣି ଟୋପେ ବି ମାଠିଆରେ ରହିବ ନାହିଁ । ଏହାକୁ ପୂର୍ଣ୍ଣକରି ଆଣିବାଟା ଏକାନ୍ତ ଅସମ୍ଭବ । କିନ୍ତୁ ପ୍ରତିବାଦ ଭାଉଜମାନେ ରାଗିବେ । ଆହୁରି ହଇରାଣ କରିବେ । ତେଣୁ ସେ କିଛି ନ କହି ଝରଣା କୂଳକୁ ମାଠିଆଟି ଧରି ଗଲା । ସେଠି ସେ ବସି ବାହୁନା ପକାଇଲା—

"ପଠାଇଲେ ପାଣି ପାଇଁ ମାଠିଆଟି ଦେଇ
କଣାମସ୍ଣ ତହିଁ ପାଣି ରହିବ ତ ନାହିଁ ।
ଭାଇସବୁ ଯାଇଛନ୍ତି ବଣିଜ ବେପାରେ
କାହିଁ କେତେ ଦୂର ଦେଶେ ନାହିଁ ମୋ ଗୋଚରେ ।"

ବହୁତ ସମୟ ଧରି ସେ ବାହୁନିଲା । କରୁଣ ସେ କ୍ରନ୍ଦନ । ଝରଣାରେ ଥିବା ବେଙ୍ଗମାନଙ୍କର ହୃଦୟ ତରଳି ଗଲା । ସେମାନେ ତା ପାଖକୁ ଆସି କାନ୍ଦିବାର କାରଣ ଜାଣିବାକୁ ଚାହିଁଲେ ।

କାନ୍ଦକାନ୍ଦ ଝିଅଟି କହିଲା—"ମୋ ଭାଇମାନେ ବିଦେଶରେ । ମୁଁ ଭାଉଜମାନଙ୍କ ପାଖରେ ଅଛି । ସେମାନେ ମୋତେ ହଇରାଣ କରିବା ପାଇଁ ଏଇ କଣା ମାଠିଆଟିଏ ଦେଇ ପାଣି ପୂର୍ଣ୍ଣ କରି ନେବାକୁ ପଠାଇଛନ୍ତି । ପୁଣି କହିଛନ୍ତି, ଏଇ ମାଠିଆର କଣା ସବୁ ପଙ୍କରେ କି ଲାଖରେ ମୁଁ ବନ୍ଦ କରିବି ନାହିଁ । ପୂର୍ଣ୍ଣ ମାଠିଆଏ ଯଦି ନ ନେବି, ସେମାନେ ମୋତେ ଆଜଠାରୁ ଖାଇବାକୁ ଦେବେ ନାହିଁ ।"

ବେଙ୍ଗମାନେ ଝିଅଟିର ଦୁଃଖ ଶୁଣି ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ହୋଇଗଲେ । ସେମାନେ ଝିଅଟିକୁ କହିଲେ—"ତୁ ଆଉ କାନ୍ଦନା । ଆମେ ମାଠିଆର କଣା ପାଖରେ ବସିଯିବୁ । ଫଳରେ କଣାବାଟେ ପାଣି ଆଉ ବୋହିବ ନାହିଁ । ତୁ ପାଣି ମାଠିଆଏ ଅକ୍ଳେଶରେ ନେଇଯିବୁ ।"

ବେଙ୍ଗମାନଙ୍କ କଥା ମାନି ଝିଅଟି ଆଖିରୁ ତାର ଲୁହ ପୋଛିଲା । ମାଠିଆଟି ଝରଣାରେ ବୁଡ଼ାଇ ପାଣିରେ ପୂର୍ଣ୍ଣକଲା । ବେଙ୍ଗମାନେ ଯାହା କହିଥିଲେ, ସେଇଆ କଲେ । ପାଣି ମାଠିଆ-ଟିଏ ଧରି ଝିଅଟି ଘରେ ପହଞ୍ଚିଲା । ଝିଅଟିର ସଫଳତା ଦେଖି ଭାଉଜମାନେ ହତାଶ । ପରଦିନ ସକାଳୁ ଭାଉଜମାନେ ତାକୁ କହିଲେ—"ଜଙ୍ଗଲକୁ ଯାଅ । ଗୋଟିଏ ପତ୍ର ଆଣିବୁ । କିନ୍ତୁ ସେ ଗୋଛା ବନ୍ଧା ହେବନାହିଁ । ଆମ କଥା ନ ମାନିଲେ ଖାଇବା ତୋର ବନ୍ଦ ହେବ ।" ଝିଅଟି ଭାଉଜମାନଙ୍କ ଆଦେଶ ମାନି ଜଙ୍ଗଲକୁ ଗଲା ।

ପତ୍ର ସବୁ ଗୋଟାଇ ଜମା କଲା । ଦଉଡ଼ିରେ ନ ବାନ୍ଧିଲେ ସେ ପତ୍ରଗୋଛା କପରି ନେବ ଜାଣିପାରିଲା ନାହିଁ । ଖାଲି ହାତରେ ଗଲେ ଖାଇବା ତାର ବନ୍ଦ ହୋଇଯିବ । ତେଣୁ ସେ ପତ୍ରଗଦା ପାଖରେ ବସି କାନ୍ଦିଲା—

"ପତ୍ର ଗୋଛେ ନେବି ବାନ୍ଧି ଦଉଡ଼ିରେ
ପତ୍ର ଗୋଛେ ନେବି ବାନ୍ଧି ବିନା ଦଉଡ଼ିରେ
ଭାଇମାନେ ତୁମେ ଅଛ କାହିଁ କେତେ ଦୂରେ
ଭାଇମାନେ ତୁମେ ଅଛ କାହିଁ କେତେ ଦୂରେ ।"

ଗୋଟିଏ ସାପ ଆସି ପଚାରିଲା—"କ'ଣ ହେଲା ? କ'ଣ ପାଇଁ ତୁ ଏତେ ବ୍ୟାକୁଳ ହୋଇ କାନ୍ଦୁଛୁ ?" ଝିଅଟି ସବୁ କଥା

ତା' ଆଗରେ କହିଲା । ସାପଟିର ଦୟା ହେଲା । ସେ କହିଲା—"ମୁଁ ଲମ୍ବ ହୋଇ ଶୋଇ ଯାଉଛି । ତୁ ପଳ ସବୁ ମୋ ଉପରେ ରଖିଦେ । ମୁଁ ଗୁରାଇ ହୋଇ ସବୁ ପଳକୁ ଦଉଡ଼ି ଭଳି ବାନ୍ଧି ଦେବି । ତୁ ପଳ ଗୋଚ୍ଛା ନେଇ ଘରେ ଆସ୍ତେ କରି ରଖିଦେବୁ । ମୁଁ ଖସି ଚାଲିଯିବି ।" ସାପଟି ଯାହା କହିଥିଲା ଝିଅଟି ତା ପାଳନ କଲା । ପଳ ଗୋଚ୍ଛାଏ ଝିଅ ନେଇ ଘରକୁ ଗଲା । ଯେମିତି ତାକୁ ରଖିଛି, ସାପଟି ଚୁପ୍ କରି ଚାଲିଗଲା । କେହି ଏ କଥା ଜାଣି ପାରିଲେ ନାହିଁ ।

ବନା ଦଉଡ଼ିରେ ବନ୍ଧା ପଳ ଗୋଚ୍ଛା ଆସିଲା । ନଣନ୍ଦ ତାଙ୍କ ଆଦେଶ ପାଳନ କରିଛି, ଏଥିରେ ଭାଉଜମାନେ ଖୁସି ହେଲେନାହିଁ । ତାକୁ ପୁଣି ଜଙ୍ଗଲକୁ ପଠାଇଲେ । କହିଲେ "ଯା ଦଉଡ଼ିରେ ନ ବାନ୍ଧି ଗୋଚ୍ଛାଏ ଜାଳେଣି କାଠ ଆଣ ।"

ଝିଅଟି ଜଙ୍ଗଲକୁ ଗଲା । ଗୋଚ୍ଛାଏ ଜାଳେଣି କାଠ ସଂଗ୍ରହ କଲା । ସେ କାଠ ଉପରେ ବସି ବଡ଼ ପାଟିରେ କାନ୍ଦିଲା ।

କାଠ ଗୋଛେ ନେବ ବାନ୍ଧି ବନା ଦଉଡ଼ିରେ
କାଠ ଗୋଛେ ନେବ ବାନ୍ଧି ବନା ଦଉଡ଼ିରେ
ଭାଇମାନେ ତୁମେ ଅଛ କାହିଁ କେତେଦୂରେ
ଭାଇମାନେ ତୁମେ ଅଛ କାହିଁ କେତେ ଦୂରେ ।

ବହୁତ ସମୟ ଧରି କାନ୍ଦିବାରୁ ଗୋଟିଏ ବୋଡ଼ା ସାପ ଆସି ପଚାରିଲା—"କଥା କ'ଣ ?" ଝିଅଟି କାନ୍ଦି କାନ୍ଦି ତାକୁ ସବୁ କଥା କହିଲା ।" ସାପଟି କହିଲା—"ବ୍ୟସ୍ତ ହୁଅନାହିଁ । କାନ୍ଦ ବନ୍ଦ

କର । ମୁଁ ଶୋଇ ଯାଉଛି । ତୁ କାଠ ମୋ ଉପରେ ଥୋଇ ଦେ । ମୁଁ ସୁରେଇ ହୋଇ ସବୁ କାଠକୁ ବାନ୍ଧି ରଖିବି । ତୋର କାଠ ଗୋଛାଟା ନେବାରେ କିଛି ଅସୁବିଧା ହେବ ନାହିଁ ।” ସାପଟି ଯାହା କହିଥିଲା, ଝିଅଟି ସେଇଆ କଲା । ଝିଅଟି ଦଉଡ଼ରେ ଅବନ୍ଧା କାଠ ଗୋଛାଟିଏ ନେଇ ଘରକୁ ଗଲା । ଆଶ୍ଚର୍ଯ୍ୟକଥା କାଠ ଗୋଛା ତଳେ ରଖିବା ମାତ୍ରେ ସାପଟି ଖସିଗଲା । ଏହା ଦେଖି ଭାଉଜମାନେ ବୋକା ପାଲଟି ଗଲେ । ସେମାନେ ଯାହା ଭାବୁଥିଲେ, ସେ ବାଟ ସବୁ ବନ୍ଦ ହୋଇଯାଉଛି । ସେଥିପାଇଁ ତାଙ୍କର ରାଗ ବଢ଼ିଗଲା । ସେମାନେ ବହୁତ ଏ ବିଷୟରେ ମସୁଧା କଲେ । ଦିନେ ନଣନ୍ଦକୁ ଧରି ସେମାନେ ଜାଳେଣୀ କାଠ ପାଇଁ ଜଙ୍ଗଲକୁ ଗଲେ । ବାଟରେ ଗୋଟିଏ ମୁଚୁକୁନ୍ଦ ଗଛ ପଡ଼ିଲା । ଗଛଟି ଫୁଲରେ ଭରପୁର । ଫୁଲଗୁଡ଼ିକ ତାର ସୁନ୍ଦର । ସାତ ଯା'- ମାନଙ୍କର ସଉକ ହେଲା । ସେମାନେ ସେ ଫୁଲକୁ ଲଗାଇବାକୁ ଇଚ୍ଛା କଲେ । କିନ୍ତୁ ଗଛ ନ ଚଢ଼ିଲେ, ଫୁଲ ତ ତୋଳା ହେବ ନାହିଁ । ସେଥିପାଇଁ ଜଣକ ପରେ ଜଣେ ଗଛ ଚଢ଼ିବାକୁ ଉଦ୍ୟମ କଲେ । ସେ ସବୁ ତ ଛଳନା । ଗଛ କେହି ଚଢ଼ି ପାରିଲେ ନାହିଁ ବୋଲି ଦେଖାଇ ହେଲେ । ତେଣୁ ନଣନ୍ଦକୁ କହିଲେ––“ଆମର ଏ ଫୁଲ ପ୍ରତି ଭାରି ସଉକ । ଆମେ ତ ଗଛ ଚଢ଼ି ପାରୁନୁ । ଟିକିଏ ଚଢ଼ିଯା । ଦୁଇଟା ଫୁଲ ତୋଳି ପକେଇ ଦେ ।” କଥା ଅମାନ୍ୟ କରିବାକୁ ନଣନ୍ଦର ମୁହଁ ନାହିଁ । ବାଧ୍ୟ ହୋଇ ସେ ଗଛରେ ଚଢ଼ି ଫୁଲ ତୋଳିବାକୁ ଲାଗିଲା । ଏଣେ ଭାଉଜମାନେ କଣ୍ଟା ଆଣି ଗଛ ମୂଳରେ ଓ ଗଣ୍ଡିରେ ବାନ୍ଧି ପକାଇଲେ । ତଳେ ମଧ୍ୟ କଣ୍ଟା ବିଛାଇ ପକାଇ ଦେଲେ । ଭାବିଲେ ଏଥର ନଣନ୍ଦଟି ଗଛରୁ ଓହ୍ଲାଇଲେ କଣ୍ଟାରେ

ପଡ଼ିଯିବ । ପଦାକୁ ଆସି ପାରିବ ନାହିଁ । ତେଣୁ ଗଛରେ ସେ ରହିବାକୁ ବାଧ୍ୟ । ସେଠି ସେ ଖାଇବାକୁ ନ ପାଇ ଶୁଖି ଶୁଖି ମରିଯିବ । ନଣନ୍ଦକୁ ଏଇ ଅବସ୍ଥାରେ ଛାଡ଼ି ଭାଉଜମାନେ ଘରକୁ ଚାଲି ଆସିଲେ ।

ଝିଅଟି ଗଛରୁ ଓହ୍ଲାଇ ପାରିଲା ନାହିଁ । ଡେଇଁଲେ କଣ୍ଟାରେ ପଡ଼ିବ ! ସେଇ ଭୟରେ ଗଛରୁ ଡେଇଁଲା ବି ନାହିଁ । ଫଳରେ ଗଛରେ ବସି ରହିଲା । ଖାଇବାକୁ ନ ପାଇ ସେ ଶୁଖି-ଗଲା । ଦେହର ସମସ୍ତ ଶକ୍ତି ତାର ବି ଚାଲିଗଲା । ଏପରିକି ପାଟିରୁ କଥା ତାର ଆଉ ବାହାରିଲା ନାହିଁ ।

ଝିଅଟି ଏଇ ଅବସ୍ଥାରେ ଥିବା ବେଳେ ଭାଇମାନେ ଦିନେ ବଣିଜରୁ ଫେରିଲେ । ସେମାନେ ଆସି ସେଇ ମୁଚୁକୁନ୍ଦ ଗଛ ପାଖକୁ ଆସିଲେ । କଣ୍ଟା ଆଡ଼େଇ ତା ତଳେ ବିଶ୍ରାମ ନେଲେ । ଭାଇମାନଙ୍କୁ ଦେଖି ଭଉଣୀଟିର ଆନନ୍ଦ ବଢ଼ିଗଲା । ସେ ସେମାନଙ୍କୁ ଡାକିବାକୁ ଚେଷ୍ଟା କଲା । ସେ ତ ଦୁର୍ବଳ । ସ୍ୱର ତାର କ୍ଷୀଣ, ଅସ୍ପଷ୍ଟ । ଭାଇମାନେ ତା ଡାକ ଶୁଣି ପାରିଲେ ନାହିଁ । ଝିଅଟିର ମନରେ ବଡ଼ ଦୁଃଖ । ସେ ନିଜକୁ ସମ୍ଭାଳି ପାରିଲା ନାହିଁ । ସେ ଭେ ଭେ ହୋଇ କାନ୍ଦିଲା । ତାର କାନ୍ଦ ଶବ୍ଦ ସିନା ଶୁଣି ହେଲାନାହିଁ । କିନ୍ତୁ ତାର ଲୁହ ଟୋପା ଟୋପା ହୋଇ ତଳେ ବଡ଼ ଭାଇ ଉପରେ ପଡ଼ିଲା । ବଡ଼ଭାଇ ଉପରକୁ ଅନାଇ ଭଉଣୀକୁ ଦେଖିଲା । ସେ କହିବାରୁ ସବୁ ଭାଇ ଭଉଣୀକୁ ଦେଖିଲେ । ଗଛରୁ କଣ୍ଟା ଖୋଲିଲେ । ମୂଳରୁ କଣ୍ଟା ବାହାର କଲେ । ସେଠୁ ତାକୁ ଉଦ୍ଧାର କଲେ । ଝିଅଟି ଭାଇ-ମାନଙ୍କୁ ପାଖରେ ପାଇ ଅଚେତ ହୋଇଗଲା । ତାର ଚେତା ଫେରାଇ ଆଣି ତାଠାରୁ ସବୁ କଥା ଶୁଣିଲେ । ଭାଇମାନେ ଖୁବ୍

ରାଗିଗଲେ । ସ୍ତ୍ରୀମାନଙ୍କ ଉପରେ ପ୍ରତିଶୋଧ ନେବାକୁ ସ୍ଥିର କଲେ । ଭଉଣୀଟିକୁ କଛୁ କୁଞ୍ଚ ଦେଲେ । ତାକୁ ଗୋଟିଏ ଅଖାରେ ପୂରାଇ ଥୋଡ଼ଆ ବଳଦ ଉପରେ ରଖିଦେଲେ । ଘରେ ପହଞ୍ଚି ଅଖାଟିକୁ ଆସ୍ତେଇନେ ଓହ୍ଲେଇ ତଳେ ଥୋଇ ଦେଲେ । ତାପରେ ଏଇ ଅଖାକୁ ଘରକୁ ଧୀରେ ଧୀରେ ନେବାକୁ ତାଙ୍କ ସ୍ତ୍ରୀମାନଙ୍କୁ କହିଲେ । ଯେତେବେଳେ ଭାଉଜମାନେ ଏଇ ଅଖାଟିକୁ ନେବାକୁ ଆରମ୍ଭ କରିଛନ୍ତି, ନଣନ୍ଦଟି ଅଖା ଭିତରେ ଥାଇ କୁଞ୍ଚିରେ ତାଙ୍କ ଦେହକୁ ଫୋଡ଼ିଦେଲା । ସେମାନେ ଚିତ୍କାର କରି ଅଖାଟି ତଳେ ଥୋଇଦେଲେ । ଏଥିରେ ଭାଇମାନେ ରାଗି ନିଆଁ । ଖୁବ୍ ତିରସ୍କାର କରି ଗାଳିଦେଲେ । ଶେଷରେ ସ୍ତ୍ରୀମାନେ ଅଖାଟିକୁ ଧୀରେ ଧୀରେ ଘରକୁ ନେବାକୁ ଲାଗିଲେ । ଅଖା ଭିତରେ ନଣନ୍ଦଟି ଥାଇ କୁଞ୍ଚିରେ ତାଙ୍କୁ ମନ ଇଚ୍ଛା ଫୋଡ଼ିଲା । ଦେହରୁ ତାଙ୍କର ରକ୍ତ ବାହାରି ବୋହିଗଲା । ଶେଷରେ ଭାଉଜମାନେ ଚୁପ୍ ରହିଲେ । ଘରେ ଅଖା ନେଇ ରଖିବା ପରେ ଭାଇମାନେ ତାଙ୍କ ଅନୁପସ୍ଥିତିରେ ଘର ଭିତରେ ଚକ୍ରୁ ଲ ସେ ସେ ବିଷୟରେ ବୁଝିଲେ । ତାଙ୍କ ଭଉଣୀ କଥା ଭାଉଜମାନେ ନ କହିବାରୁ ସେମାନେ ଭଉଣୀ ବିଷୟରେ ଜାଣିବାକୁ ଚାହିଁଲେ । ଯେତେବେଳେ ସ୍ତ୍ରୀମାନେ କହିଲେ ଯେ ସେ ଜଙ୍ଗଲକୁ ସାଙ୍ଗମାନଙ୍କ ସାଥୀରେ ଜାଳେଣୀ କାଠ ପାଇଁ ଯାଇଛି, ସେତେବେଳେ ସେମାନେ ଆଉ ସମ୍ଭାଳି ପାରିଲେ ନାହିଁ । ସେମାନେ ତାଙ୍କୁ ମୁଚୁକୁନ୍ଦ ଗଛ ଉପରେ ଦେଖିଲେ, ସେ କଥା କହିଲେ । ସେମାନେ ତାକୁ ଗୋଟିଏ ଅଖାରେ ପୂରାଇ ନେଇ ଆସିଛନ୍ତି ବୋଲି ଜଣାଇଲେ । ତାପରେ ତାଙ୍କ ସ୍ତ୍ରୀମାନଙ୍କୁ ଅଖା ପାଖକୁ ନେଲେ । ସେଥିରୁ ଭଉଣୀକୁ ବାହାର କଲେ । ନଣନ୍ଦକୁ ଦେଖି

ଭାଉଜମାନେ ହତବାକ୍ । ସ୍ତବ୍ଧ । ଭୟରେ ଥରହର । ଭାଇ-ମାନେ ହଠାତ୍ କିଛି ନକରି ଚୁପ୍ ରହିଲେ ।

କିଛିଦିନ ପରେ ଭାଇମାନେ କହିଲେ—"ବିଦେଶରେ ଆମେମାନେ ଥିଲାବେଳେ ମାନସିକ କରିଥିଲୁ । ସେଥିପାଇଁ ଆମେ କୂଅଟିଏ ଖୋଳି ପୂଜା କରିବୁ । ମାନସିକ ପୂରଣ ପାଇଁ ବାରଫୁଟ ଚଉଡ଼ା ଆଉ ଅଠର ଫୁଟ ଲମ୍ବର କୂଅଟିଏ ହେଲା । କୂଅ ଖୋଳା ଯେଉଁଦିନ ସରିଲା, ସେଇଦିନ ପୂଜା ପାଇଁ ଆୟୋଜନ ହେଲା । ସ୍ତ୍ରୀଲୋକମାନେ ତାଙ୍କର ଭଲ ଭଲ ଲୁଗା ପିନ୍ଧିଲେ । ଡମମାନେ ବାଜା ବଜେଇ ଆଗେ ଆଗେ ଚାଲିଲେ । ତାଙ୍କ ପଛରେ ସ୍ତ୍ରୀମାନେ ଚାଲିଲେ । ସମସ୍ତେ କୂଅ ଚାରିପଟେ ବେଢ଼ ପକାଇ କୂଅ ଧାରରେ ଠିଆହେଲେ । ସେମାନଙ୍କ ପଛରେ ତାଙ୍କ ସ୍ୱାମୀମାନେ ଠିଆ ହେଲେ । ଏତିକିବେଳେ ଭାଇମାନେ ନିଜ ନିଜ ସ୍ତ୍ରୀଙ୍କୁ କୂଅ ଭିତରକୁ ଠେଲିଦେଲେ । ସ୍ତ୍ରୀଲୋକମାନେ କୂଅ ଭିତରେ ପଡ଼ିଗଲେ । ଭାଇମାନେ କାଠ ତା ଉପରେ ଦେଇ ବନ୍ଦ କରିଦେଲେ । ବର୍ଷଟିଏ ସ୍ତ୍ରୀଲୋକମାନେ ସେଇ ଗାତ ଭିତରେ ରହିଗଲେ । ବର୍ଷକ ପରେ ଭାଇମାନେ ତାଙ୍କୁ ସେ ଗାତରୁ ଉଦ୍ଧାର କରି ପଦାକୁ ଆଣିଲେ ।

(ଅନ୍ୟ ଅଞ୍ଚଳରେ ଏଇ ଗପ ଭିନ୍ନ ରୂପରେ ପ୍ରଚଳିତ । ମୂଳ ଅଂଶ ଏବଂ ଘଟଣାକୁ ଦେଇଥିବା ନାମ ଫରକ । ଶେଷଟି-ସମାନ ।

ଏକଦା ଗୋଟିଏ ଝିଅ ଥିଲା । ତାର ନାମ ସ୍ନିଗ୍ଧା । ତାର ସାତ ଭାଇ । ଘରେ ଭଉଣୀକୁ ତାର ଭାଉଜମାନଙ୍କ ପାଖରେ ଛାଡ଼ି ବ୍ୟବସାୟରେ ଦୂର ବିଦେଶକୁ ଚାଲିଗଲେ । ସାତଟି ଯାକ ଭାଉଜ ସ୍ନିଗ୍ଧାକୁ ଭଲ ପାଆନ୍ତି ନାହିଁ । ଘୃଣା ବି କରନ୍ତି । ତାକୁ

ହଇଷ୍ଣ କରିବା ପାଇଁ ଯାହା ଦରକାର, ସେଇଆ ବି କରନ୍ତି । ତହିଁରେ ସେମାନେ ଝୁଡ଼ିଟିଏ ସୋରିଷ ନେଲେ । ଗୋଟିଏ ଜମିରେ ବୁଣିଦେଲେ । ଧୀରକୁ ଡାକ କହିଲେ—“ସବୁ ସୋରିଷ ଗୋଟାଇ କରି ଆଣିବୁ ନଇଲେ ତୋର ଆଜିଠାରୁ ଖାଇବା ବନ୍ଦ ।” ଧୀର ଜମି ପାଖକୁ ଗଲା । ସୋରିଷ କପରି ଗୋଟାଇବାକୁ ହେବ ଜାଣି ପାରିଲା ନାହିଁ । ତେଣୁ ସେଇଠି ବସି ବାହୁନିଲା—

ବୁଣା ସୋରିଷ ଝୁଡ଼ିଏ କାହୁଁ ଗୋଟାଇବି
ଖାଇବାକୁ ଦେବେ ନାହିଁ କଅଣ ଖାଇବି ।
ତୁମେ ଭାଇ ବିଦେଶରେ କାହିଁ କେତେ ଦୂରେ
ଭଉଣୀ ତମର ଏଠି ଝୁରି ଝୁରି ମରେ ।”

ତାର କାନ୍ଦ ଶୁଣି ଦଳେ ପାରିଙ୍କର ଦୟା ହେଲା । ସେ ଆକାଶରୁ ଓହ୍ଲାଇ ଆସି ତାଠାରୁ କଥାଟା ବୁଝିଲେ । ସେମାନେ ତାକୁ କାନ୍ଦ ବନ୍ଦକରି ବେଶ୍ ଆରାମ କରିବାକୁ କହିଲେ । ସୋରିଷ ଗୋଟି ଗୋଟି କରି ସେମାନେ ଗୋଟାଇବାରେ ଲାଗି ପଡ଼ିଲେ । ଗୋଟାଇ ଥିବା ସୋରିଷକୁ ଆଣି ଝୁଡ଼ିରେ ରଖିଲେ । ଝୁଡ଼ିଟି ସୋରିଷରେ ପୂର୍ଣ୍ଣ ହୋଇଗଲା । ଏହା ଦେଖି ଝିଅଟି ଭାରି ଖୁସି । ଝୁଡ଼ିଟି ନେଇ ଭାଉଜମାନଙ୍କ ପାଖରେ ଥୋଇଦେଲା । ଭାଉଜମାନେ ତାକୁ ଆଉ ଗୋଟିଏ କାମ ଦେଲେ । ତାକୁ କହିଲେ—“ଯାଆ, ଭାଲୁର ବାଳ ଆଣିବୁ । ସେଥିରେ ଗୋଟିଏ ପଟି କରିବୁ, ଯାହାକୁ ବାହାଘର ବେଳେ ମୁଣ୍ଡରେ ବାନ୍ଧିବୁ । ତେଣୁ ସେ ଜଙ୍ଗଲକୁ ଗଲା । ସେଠି ବସି କାନ୍ଦିଲା । ଭାଲୁ ଛୁଆ ଦୁଇଟି ସେଠି ପହଞ୍ଚିଲେ । ସେମାନେ ତାର କାନ୍ଦିବାର କାରଣ ଜାଣିବାକୁ ଚାହିଁଲେ । ଧୀର ସବୁକଥା କହିଲା । ସେମାନେ କହିଲେ—“ତୁ ଆଉ କାନ୍ଦନା ! ଆମେ

ତାର ବ୍ୟବସ୍ଥା କରିବୁ ।" ତାପରେ ସେମାନେ ତାକୁ ତାଙ୍କ ଗୁମ୍ଫାକୁ ନେଇଗଲେ । ସେଠି ତାକୁ ଲୁଚାଇ ରଖିଲେ । ମା' ଘରକୁ ଆସିବାରୁ ପିଲାଏ ତାଠାରୁ ଦୁଧ ପିଇଲେ । ତାକୁ କହିଲେ—"ଆମକୁ ତୋର କିଛି ବାଳ ଦେଇଯା । ତୁ ନ ଥିଲା ବେଳେ ଆମେ ତାକୁ ଧରି ଖେଳିବୁ ।" ମା କିଛି ବାଳଦେଇ ପୁଣି ଖାଦ୍ୟ ଅନ୍ୱେଷଣରେ ଚାଲିଗଲା । ମାଠାରୁ ଆଣିଥିବା ବାଳ ହ୍ରୀରକୁ ଦେଇ ଖୁସିବାସିରେ ତାକୁ ବଦା କରିଦେଲେ । ହ୍ରୀରର ବାଳ ଦେଖି ଭାଉଜମାନେ ବେଶି ରାଗିଗଲେ । ତାକୁ କହିଲେ—"ବାହାଘର ପାଇଁ ବାଘ ଦୁଧର ଦରକାର ଦରକାର । ଯା ବାଘ ଦୁଧ ଧରି ଆସିବୁ ।" ହ୍ରୀର ଜଙ୍ଗଲକୁ ଗଲା । ସେଠି ବସି ବଡ଼ପାଟିରେ କାନ୍ଦିଲା । ବାଘଛୁଆ ଦୁଇଟି ଏ କାନ୍ଦଣା ଶୁଣି ଆସିଲେ । ଘଟଣା ଜାଣିବାକୁ ଚାହିଁଲେ । ସବୁ କଥା ହ୍ରୀର ତାଙ୍କୁ କହିଲା । ସେମାନେ କହିଲେ—"କାନ୍ଦ ବନ୍ଦକର । ଆମେ ତୋତେ ଦୁଧ ଦେବୁ । ଆମ ସାଥୀରେ ଆ ।" ତାକୁ ସେମାନେ ତାଙ୍କ ଗୁମ୍ଫାରେ ଲୁଚାଇ ରଖିଲେ । ବାଘୁଣୀ ଆସିଲା । ପିଲାଏ ତାଠାରୁ ଦୁଧ ଖାଇଲେ । ବାଘୁଣୀ କହିଲା—ଏଠି ମଣିଷ ଗନ୍ଧ ହେଉଛି । ପିଲାଏ ହସିଲେ ଆଉ କହିଲେ—"ଏଇଠି ମଣିଷ କେଉଁଠୁ ଆସିବ ? ତୁ ମିଛରେ ବାଉଳା ହେଉଛୁ ।"

ବାଘୁଣୀକୁ ପିଲାମାନେ କହିଲେ—"ତୁ ନଥିଲାବେଳେ ଆମକୁ ଶୋଷହେଉଛି । ତୁ କିଛି ଦୁଧ ରଖିଯା । ଆମର ଦରକାର ବେଳେ ଆମେ ଖାଇବୁ ।" ବାଘୁଣୀଟି ଗୋଟିଏ ମାଟିପାତ୍ରରେ ଦୁଧ ରଖିଦେଲା । ତାପରେ ସେ ଚାଲିଗଲା । ମାଠାରୁ ରଖି ବା ଦୁଧକୁ ବାଘ ପିଲାଏ ହ୍ରୀରକୁ ଦେଲେ । ସେ ଦୁଧ ଆଣି ଘରକୁ ଆସିଲା । (ଆଗ ଗପର ଶେଷ ଏ ଗପର ଶେଷ ଏକା)

# ପଞ୍ଚତନ୍ତ୍ରର କାହାଣୀ

ଏକଦା ଗଉଡ଼ଟିଏ ଥିଲା । ତା ନାଁ ସୋନା । ସେ ମୂଲଲାଗି କିଛି ପଇସା ସଞ୍ଚୟ କଲା । ଯେଉଁ ପଇସାରେ ସେ ବାଛୁରୀଟିଏ କିଣିବାକୁ ଆଗ୍ରହୀ । ସେ ମୂଲ ଲାଗି ଯେ ଅର୍ଥ ସଞ୍ଚୟ କରିପାରେ, ବାଛୁରୀଟି ହେବ ତାର ପୁଷ୍ଟିର ପ୍ରମାଣ ।

ସେ ଦୂର ଗାଁକୁ ଗଲା । ରଖିଥିବା ପଇସାରେ ଅଣ୍ଡିରା ବାଛୁରୀଟିଏ କିଣିଲା । ଫେରୁ ଫେରୁ ବାଟରେ ରାତି ହୋଇଗଲା । ସେ ଗୋଟିଏ ଛୋଟ ଗାଁରେ ପଶିଲା । ସେଠି ଗାଁରେ ଗୋଟିଏ ଚୋରର ଘର । ସେ ଚୋରକୁ କହିଲା—"ମୋତେ ଟିକିଏ ଆଶ୍ରୟ ଦିଅ । ରାତିଟା ମୁଁ ଏଠି ଶୋଇଯିବି । ସକାଳୁ ଯିବିଘର । ଚୋରଟି ସେ ଆଣିଥିବା ଅଣ୍ଡିରା ବାଛୁରୀଟି ଦେଖି ଲୋଭେଇଲା । ସେ କହିବା ଅନୁସାରେ ସୋନା ବାଛୁରୀଟିକୁ ନେଇଯାଇ ତା ଗୁହାଳଘରର ବଳଦ ପାଖରେ ବାନ୍ଧିଦେଲା । ରାତିରେ ଚୋର ଘରେ ସେ ଦିଟା ଖାଇଦେଇ ତା'ର ବାହାର ଘର ବାରଣ୍ଡାରେ ଶୋଇଗଲା ।

ରାତି ଅଧ । ଚୋରଟି ଉଠିଲା । କିଛି ପିଠଉ ପାଣିରେ ବତୁରାଇ ଲେଇ କଲା । ତାକୁ ବାଛୁରୀ ଦେହରେ ଲେସିଦେଲା । ତାର ଘଣାବୁଢ଼ା ବଳଦକୁ ଫିଟାଇ ଦେଲା । ଚୋର ଘର ବଳଦ ତ ପିଠଉ ପ୍ରିୟ । ବଳଦଟି ବାଛୁରୀ ଦେହରେ ଲେସା ହୋଇଥିବା ପିଠଉକୁ ଲୋଭରେ ଚାଟିବାକୁ ଲାଗିଲା । ଚୋରଟି ହଟ୍ଟାକରି ଗାଁ ଲୋକଙ୍କୁ ଡାକି ଆଣିଲା । ସେମାନଙ୍କୁ କହିଲା—

"ଦେଖ, ମୋ ଘଣା ବଳଦ ବାଛୁରୀଟିଏ ଜନ୍ମକରିଛି ।" ଗାଁଲୋକ ଜାଣନ୍ତି—ଗୋରୁ ନିଜ ବାଛୁରୀ ଛଡ଼ା କାହାକୁ ଚୁଟେ ନାହିଁ । ବଳଦଟିଏ ବାଛୁରୀଟିକୁ ଚୁଟୁଛି । ତେଣୁ ଏଇଟି ଯେ ବଳଦର ପିଲା, ଏହା ଗାଁବାଲାଙ୍କର ହୃଦ୍‌ବୋଧ ହେଲା ।

ସକାଳୁ ସୋନା ଉଠିଲା । ତାର ଗାଁକୁ ସେ ବାହାରିଲା । ସେଥିପାଇଁ ତେଲିର ଗୁହାଳକୁ ଗଲା । ବାଛୁରୀ ତାର ଫିଟାଇଲା । ଏହାଦେଖି ତେଲି ତାକୁ ବାରଣ କଲା । କହିଲା—"ବାଛୁରୀଟି ମୋ ବଳଦ ଜନ୍ମ କରିଛି । ତୁ କାହିଁକି ତାକୁ ଫିଟାଉଛୁ ?"

ସୋନା ଏ ପ୍ରକାର କଥା ତେଲିଠାରୁ ଆଶା କରୁ ନ ଥିଲା । ତେଣୁ ସେ ଆଶ୍ଚର୍ଯ୍ୟ । ହତବୁଦ୍ଧି ହେଲା । ସୋନା ଯାଇ ଗାଁବାଲାଙ୍କ ଆଗରେ ଫେରାଦ ହେଲା । ଗାଁବାଲାଙ୍କ ଆଗରେ ଫେରାଦ ହେଲା । ଗାଁବାଲା କହିଲେ—"ତୁ ଗାଁକୁ ଆସିଲାବେଳେ ବାଛୁରୀ ଆଣିବା କଥା ଆମେ ଦେଖିନାହୁଁ । ତୁ ଯେ ତେଲିର ଗୁହାଳରେ ବାଛୁରୀ ବାନ୍ଧିଲୁ ସେକଥା ଆମକୁ କହିଲୁ ନାହିଁ କି ସାକ୍ଷୀ ରଖିଲୁ ନାହିଁ । ତେଣୁ ସେ ବାଛୁରୀ ତୋର ବୋଲି ଆମେ କେମିତି କହିବୁ ? ତାଛଡ଼ା ଗୋରୁ ଅନ୍ୟ କାହାର ବାଛୁରୀ ଚୁଟେ ନାହିଁ । ଆମେ ଦେଖିଛୁ, ତେଲିର ବଳଦ ସେ ବାଛୁରୀକୁ ଚୁଟୁଥିଲା । ତେଣୁ ସେଇଟା ତେଲି ବଳଦର ଛୁଆ ବୋଲି ଆମର ଧାରଣା । ଏପରି ଅବସ୍ଥାରେ ତେଲି ସେ ବାଛୁରୀ ତୋତେ ଦେବାକୁ ଆମେ କହି ପାରିବୁ ନାହିଁ । ତୁ ଯଦି ଆମ କଥାରେ ଅସନ୍ତୁଷ୍ଟ, ତାହା ହେଲେ ତୋ କଥା ଆମକୁ ବୁଝାଇବା ଭଳି ଭଦ୍ରଲୋକଙ୍କୁ ଡାକ । ନ୍ୟାୟ ହେଉ । ତୋର ବାଛୁରୀ ହେଲେ ତୁ ନେଇପିବୁ ।"

ସୋନା ଭଦ୍ରଲୋକ ଡାକିବାକୁ ପାଖ ଗାଁକୁ ବାହାରିଲା । ଜଙ୍ଗଲରେ ସେ ବାଟବଣା ହୋଇଗଲା । ଯାଉ ଯାଉ ସେ

ଦେଖିଲା—ତା ପାଦ ପାଖରୁ ଗୁଣ୍ଡୀଚର ଚଢ଼େଇଟିଏ ଉଡ଼ି ବୁଲୁଥିଲା । ସେ ଚଢ଼େଇକୁ ଡାକି କହିଲା—"ଭାଇ ମୁଁ ବଡ଼ ବିପଦରେ ପଡ଼ିଛି । ମୋ କଥା ଟିକିଏ ଶୁଣ ।" ଚଢ଼େଇ ଉଡ଼ି ନ ଯାଇ ଫେରି ଆସିଲା । ସେ ସୋନାକୁ ପଚାରିଲା—"କ'ଣ ତୋର ଦୁଃଖ ?"

ସୋନା ତାର ବିପତ୍ତି କଥା ଆମୂଳଚୂଳ କହିଲା । ଚଢ଼େଇ ସବୁକଥା ଶୁଣି କହିଲା—"ତୋତେ ସାହାଯ୍ୟ କରିବାକୁ ମୋର ଖୁବ ଇଚ୍ଛା । କିନ୍ତୁ ମୁଁ ଏକୁଟିଆ କିଛି କରି ପାରିବି ନାହିଁ । ମୋର ସାଥୀଟିଏ ଦରକାର । ତୁ ଯା । ପ୍ରଥମେ ଯେଉଁ ଜୀବନ୍ତ ପ୍ରାଣୀକୁ ଦେଖିବୁ, ତାକୁ ତୋ ଦୁଃଖ କହିବୁ । ସେ ଯଦି ରାଜି ହୁଏ, ମୁଁ ତୋତେ ସାହାଯ୍ୟ କରିବାକୁ ଯିବି ।"

ସୋନା ଆଉ କାଳ ବିଳମ୍ବ ନ କରି ଚାଲିଲା । ବାଟରେ ସେ ବଲୁଆଟିଏ ଦେଖିଲା । ବଲୁଆଟିକୁ ସେ ତା ନିଜର ଦୁଃଖ କହିଲା । ଚଢ଼େଇ ଯେଉଁ ପ୍ରସ୍ତାବ ଦେଇଥିଲା, ତା ବି ଜଣାଇ ଦେଲା । ବଲୁଆଟି ମଧ୍ୟସ୍ଥ ହେବାକୁ ରାଜି କିନ୍ତୁ ଦୁଇଟି ସର୍ତ୍ତରେ । ପ୍ରଥମରେ ଗାଁବାଲା ଜଙ୍ଗଲ ସୀମାକୁ ଆସିବେ । ଦ୍ୱିତୀୟରେ ସାଥୀରେ କୁକୁର ଆଣିବେ ନାହିଁ ।

ସୋନା ଗାଁକୁ ଗଲା । ଭଦ୍ରଲୋକି କରିବାକୁ ଆସୁଥିବା ଜୀବଙ୍କର ସର୍ତ୍ତ ବି କହିଲା । ଗାଁ ବାଲା କହିଲେ—"ଏ ସର୍ତ୍ତରେ ଆମେ ରାଜି । ଯାଅ ସେମାନଙ୍କୁ ଜଙ୍ଗଲ ସୀମାକୁ ଡାକିଆଣ । ଆମେ ସେଠାକୁ ଯାଉଛୁ ।"

ଗୁଣ୍ଡୀଚର ଓ ବଲୁଆ ଆସି ପାଖାପାଖି ଗୋଟିଏ ପଥରରେ ବସିଲେ । ଏପଟେ ଗାଁ ବାଲା ବସିଲେ । କଥାଟା ପଡ଼ିଲା । ଗାଁବାଲା ଯାହା ନିଷ୍ପତ୍ତି ନେଇଥିଲେ ଆଉ ଯେଉଁ

କାରଣରୁ ଦେଇଥିଲେ, ତାକୁ ଦୋହରାଇଲେ । ସେତେବେଳକୁ ବଲୁଆ ଓ ଗହିରର ଚଢ଼େଇ ଡୋଳାଉଥାନ୍ତି । ଗାଁର ଜଣେ ଲୋକ ସୋନାକୁ କହିଲା—"ହଇରେ, ଯାହାକୁ ସାହାଯ୍ୟ କରିବାକୁ ଡାକନ୍ତୁ, ସେମାନେ ତ ଶୋଇଗଲେଣି, ତୋ କଥା ସେମାନେ ଆଉ କ'ଣ କହିବେ ?"

ଗହିରର ଓ ବଲୁଆ ଏକଥା ଶୁଣି ଚମକ ପଡ଼ି ଉଠିଲେ । ଗହିରରଟି କହିଲା "ମୋତେ କ୍ଷମା କରିବେ । ମୁଁ ଗୋଟିଏ ସ୍ୱପ୍ନ ଦେଖୁଥିଲି, ସେଇଟା ଆପଣମାନଙ୍କ ଆଗରେ କହୁଛି । ଆପଣମାନେ ତାର ଅର୍ଥ କହନ୍ତୁ ।"

ବଲୁଆ କହିଲା—"ମୁଁ ବି ଗୋଟିଏ ସ୍ୱପ୍ନ ଦେଖୁଥିଲି । ଆପଣମାନେ ଟିକଏ ମନଦେଇ ମୋ ସ୍ୱପ୍ନ କଥାଟା ଶୁଣନ୍ତୁ । ତାକୁ ମୋତେ ବୁଝାଇ ଦେଲେ ବାକ୍ସଟାକୁ ରଖିବେ । ବୁଝାଇ ନ ପାରିଲେ, ବାକ୍ସଟାକୁ ସେ ଲୋକକୁ ଦେଇଦେବେ ।"

ସେମାନଙ୍କର ସ୍ୱପ୍ନ ସବୁ କ'ଣ ? ତାହା କହିବାକୁ ଗାଁବାଲା ଅନୁରୋଧ କଲେ । ପ୍ରଥମେ ଗହିରର ଚଢ଼େଇଟି ତାର ସ୍ୱପ୍ନ କଥା ଆରମ୍ଭ କଲା । ସେ କହିଲା—"ସ୍ୱପ୍ନରେ ମୁଁ ଦୁଇଟି ଅଣ୍ଡା ଦେଖିଲି । ଗୋଟିଏ ଅଣ୍ଡା ଅନ୍ୟ ଅଣ୍ଡା ଉପରେ ବସିଛି । ମା ପକ୍ଷୀ ସେଠି ନାହିଁ । ଏହାର ଅର୍ଥ କଣ ? ମୋତେ ଟିକଏ ବୁଝେଇ ଦିଅ ।" ବଲୁଆଟି କହିଲା—"ମୁଁ ଦେଖିଲି, ସମୁଦ୍ରରେ ନିଆଁ ଲାଗିଛି । ମାଛଗୁଡ଼ାକ ସବୁ ପୋଡ଼ି ଗଲେ । ମୁଁ ସେସବୁ ଖାଇବାରେ ବ୍ୟସ୍ତ । ମୁଁ ସେଠାରୁ ଉଠୁ ନଥିଲି । ଏହାର ଅର୍ଥ କ'ଣ ? ଆପଣମାନେ ମୋତେ ଟିକଏ ବୁଝାଇ ଦିଅନ୍ତୁ ।"

ଗାଁ ଲୋକେ କହିଲେ—"ଦୁଇଟିଯାକ ସ୍ୱପ୍ନ ଏକା ପ୍ରକାରର । ଏହାର କିଛି ମାନେ ନାହିଁ । ଏସବୁ ଅସମ୍ଭବ କଥା । ଗୋଟିଏ ଅଣ୍ଡା ଅନ୍ୟ ଅଣ୍ଡା ଉପରେ ବସି ନପାରେ ସେଇପରି ସମୁଦ୍ରରେ ନିଆଁ ଲାଗିବା ଅସମ୍ଭବ । ତେଣୁ ମାଛ ପୋଡିବାର ପ୍ରଶ୍ନ କିପରି ଉଠିବ ।"

ବିଲୁଆଟି କହିଲା—"ଏସବୁ କଥା ଯଦି ଅସମ୍ଭବ ଓ ବିଶ୍ୱାସ ଯୋଗ୍ୟ ନୁହଁ, ତାହା ହେଲେ ବଳଦ କିପରି ବାଛୁରୀ ଜନ୍ମକରିବ ଆଉ ସେ ପୁଣି ବିଶ୍ୱାସଯୋଗ୍ୟ ହେବ ।"

ଗାଁବାଲା କିଛି ସମୟ ଚୁପ୍ ରହିଲେ । ତାପରେ ସମସ୍ୱରରେ ସ୍ୱୀକାର କଲେ—"ବଳଦ ବାଛୁରୀ ଜନ୍ମ କରିବା କଥା ସେମାନେ କେବେ ହେଲେ ଶୁଣି ନାହାନ୍ତି । ଗାଈ କେବଳ ବାଛୁରୀ ଦିଏ ।"

ବିଲୁଆ କହିଲା—"ତେଲି ତ ଅସମ୍ଭବ କଥା କହୁଛି, ତା କଥାରେ ଆପଣମାନେ ମାନିବା ଉଚିତ୍ କି ?"

ଗାଁ ବାଲା କହିଲେ—'ସେଇଟା ଆମର ଭୁଲ୍ । ଏବେ ଆମେ କହୁଛୁ, ଧୋବାର ସେ ବାଛୁରୀ । ତାକୁ ସେ ନେଉ । ତେଲି ଆମକୁ ଠକୁଛି । ତେଲି ପାଞ୍ଚ ଟଙ୍କା ଜୋରିମାନା ଦେଉ ।"



# କୋଇଲି ଓ ବାଳକ

କୃଷୀ ଜାତିର ଲୋକମାନଙ୍କୁ ସାନ୍ତାଳମାନେ କୋଇର କହନ୍ତି ।

ଏକଦା ଜଣେ କୋଇର ଥିଲା । ସେ କୃଷି କରି ବେଶ୍ ଭଲରେ ଚଳେ । ତା ଘର ସାମନାରେ ଗୋଟିଏ ବାଳକର ଘର । ସେ ବି କୃଷି ଉପରେ ନିର୍ଭରଶୀଳ । କିନ୍ତୁ କୃଷିରୁ ସେ ଜମା ଲାଭ ପାଏନାହିଁ । ଦିନକୁ ଦିନ ସେ ଗରିବ ହୋଇ ଯାଉଥାଏ । ବାଳକଟି ଭାବିଲା—ସେ ଯଦି କୋଇରକୁ ଭାଷରେ ଅନୁକରଣ କରିବ, ସେ ହୁଏତ ଫସଲରୁ ଭଲ ଅମଳ ପାଇବ । ତାହାହେଲେ ଦୁଃଖ ତାର ଦୂରେଇ ଯିବ । ସେଥିପାଇଁ କୌଣସି ନା କୌଣସି ଆଳରେ ସେ କୋଇର ଘରକୁ ଯାଏ । କୋଇର ତା ପରଦିନ କୃଷି କାମ କଅଣ କରିବ, ତାହା ସେ ଶୁଣେ । ରାତିରେ ବି ସେ କୋଇର ଘର ପାଖରେ କାନଦେଇ କୋଇରର କୃଷି ବିଷୟରେ ଯାହା କହେ, ସେ ସବୁ ଶୁଣେ । ସେ କୋଇରକୁ ଅବିକଳ ଅନୁକରଣ କଲା । ଏପରିକି କୋଇରକୁ ଦେଖି ହଳ ଯୋଚିଲା, ହଳ ଚଳାଇଲା, ଧାନ ବୁଣିଲା ଓ ଧାନ ରୋଇଲା । ଫଳରେ ଫସଲରୁ ସେ ବେଶ୍ ଅମଳ ପାଇଲା । କିନ୍ତୁ ବାଳକଟିର ଏଥିରେ ଅବଶୋଷ ମେଣ୍ଟିଲା ନାହିଁ । ସେ ମନେ ମନେ ସ୍ଥିର କରିନେଲା ଯେ ଏଥର କୋଇରକୁ ଅନୁକରଣ କରିବାଟା ସେ ଚାଲୁ ରଖିବ । ସେଇଆ ବି ସେ କଲା । ତାର ଅନ୍ଧ ଭାବରେ ଅନୁକରଣଟା କୋଇରକୁ ଜଳ ଜଳ ହୋଇ ଦେଖାଗଲା । ବାଳକର ଏ ରଙ୍ଗ ଢଙ୍ଗ କୋଇରକୁ ଭଲ ଲାଗିଲା ନାହିଁ । ସେ ଭାବିଲା—

"ବାରିକକୁ ଏପରି ପାଣେ ଦେବ ଯେ ତାର ମନ ଘର ଧରିଯିବ । ତେଣୁ ନିଜ ଅନୁସାରେ ପୁଣି ସେ କାମ କରିବ ।"

ଜାନୁଆରୀ ମାସରେ ଉଭୟେ ଆଖୁ ଲଗାଇଲେ । ଫସଲ ଭଲ ହୋଇଥାଏ । ଅଧେ ଜନୁଆରୀ ଆସିବା ପରେ ଦିନେ କୋଇରି ତା'ର ଘରେ ବସିଥିଲା । ବାରିକଟି ସେଠି ପହଞ୍ଚିଗଲା । ବାରିକକୁ ପାଣେ ଦେବା ମତଲବରେ ସେ ତାର ଚାକରମାନଙ୍କୁ କହିଲା— "ଆଖୁ କିଆରୀରେ କାଲି ଭଲକରି ମଞ୍ଜ ଦେବ । ଗଛ ସବୁ ଯେମିତି ଭାଙ୍ଗିଯିବ ।" ବାରିକଟି ତାର ପରଦିନ ତା ଆଖୁ କିଆରୀରେ ମଞ୍ଜ ଦେଇ ସବୁ ଆଖୁ ଗଛକୁ ଭାଙ୍ଗିଦେଲା । ତା କୋକାମାଁ ଦେଖି ଗାଁଯାକ ହସିଲେ । ବାରିକର ଆଖୁ ଗଛ ସିନା ଭାଙ୍ଗିଗଲା, କିନ୍ତୁ ଗଛ ତେରରୁ ବହୁତ ଗଛ ବାହାରିଲା । ଗଛରେ ଆଖୁ କିଆରୀ ଭରପୂର । ସେ ବହୁତ ବେଶୀ ଆଖୁ ପାଇଲା ।

ବୁଟ ବୁଣିବାର ବେଳ ଆସିଗଲା । କୋଇରିଟି ବାରିକକୁ ଠକାଇବା ପାଇଁ ବାରିକ ଶୁଣିବା ଭଳି ଚାକରଙ୍କୁ କହିଲା— "ବୁଟ ମଞ୍ଜି ସବୁ ନେଇ ଭଲ କରି ଆଜ ଭାଜି ଦିଅ ।" କାଲି ବୁଣିବ । ଫଳରେ ଏଥିରୁ ଭଲ ଗଜା ବାହାରିବ ।" ଏକଥା ଶୁଣି ବାରିକ ଚାଲିଗଲା । ତାର ତ ମନ ଲାଗିଛି । ସେ ମଞ୍ଜି ବୁଟ ସବୁକୁ ଭାଜି ପରଦିନ ବୁଣିଦେଲା । ଯେଉଁ ମଞ୍ଜି ଭଲ ଭାବରେ ଭାଜି ହୋଇ ନଥିଲା ସେଥିରୁ ଗଜା ବାହାରିଲା । ଫଳରେ ତା କିଆରୀରେ ଏଠି ସେଠି ଗଛ ହେଲା । କୋଇରି ତା ବୁଟମଞ୍ଜି ଭାଜି ନଥିଲା । ତା କିଆରୀ ବୁଟଗଛରେ ପୂର୍ଣ୍ଣ ହୋଇଗଲା । ଭଲ ଗଛ ତା କିଆରୀରେ ନହେବାରୁ, ବାରିକଟି କୋଇରି ପାଖକୁ ଗଲା । ଏ ବିଷୟରେ ପଚାରିଲା । କୋଇରିଟି କହିଲା—"ବୁଟ ମଞ୍ଜି ଭଜାରେ ତୋର ଖଇଷ୍ଣ କିଛି ରହିଗଲା । ଫଳରେ ଭଲ

ଗଛ ହେଲା ନାହିଁ । ବାଣିଜ୍ୟର ବୋକାମୀ ଯୋଗୁଁ ଲୋଭୀଟିର ପେଟରେ ଚାଲିଲା । ଶେଷରେ ଲୋଭୀଟିର ବୃକ୍ଷ ତା ବନ୍ଧୁଙ୍କରେ ଗଲା । ଯେଉଁ ଅଳ୍ପ କେତୋଟି ବୃକ୍ଷ ଗଛ ବାଣିଜ୍ୟର ଜମିରେ ହୋଇଥିଲା, ସେ ସବୁ ବେଶ୍ ବଡ଼ ହୋଇ ବଢ଼ିଲା । ବୃକ୍ଷ ବେଶ୍ ଅମଳ ଦେଲା । ତିନି ଚାରି ବର୍ଷ ଭିତରେ ଧନରେ ସେ ଲୋଭୀଙ୍କୁ ଟପିଗଲା ।



# ରାଜପୁତ୍ରର ଜ୍ଞାନ ଆହରଣ

ବନ୍ଧୁବନ ଗଡ଼ରେ ଜଣେ ରାଜା ଥିଲେ । ତାଙ୍କର ଗୋଟିଏ ବୋଲି ପୁଅ । ତାଙ୍କ ଅନ୍ତେ ରାଜା ହୋଇ ସେ ପ୍ରଜା ପାଳିବାର ଦାୟିତ୍ୱ ନେବ । ଖାଲି ସେତିକି ନୁହେଁ । ପ୍ରଜାଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ତ ଏକ ସ୍ୱାଭାବିକ କଥା । ସେସବୁ ସମାଧାନ ପାଇଁ ସେମାନେ ରାଜାଙ୍କ ଦ୍ୱାରସ୍ଥ ହେବେ । ସେମାନଙ୍କୁ ଉଚିତ୍ ନ୍ୟାୟ ଓ ତୁରନ୍ତ ନିଷ୍ପତ୍ତି ଦେବା ହେଉଛି ରାଜାର କର୍ତ୍ତବ୍ୟ । ଏଥିପାଇଁ ଶିକ୍ଷିତ ଅପରିହାର୍ଯ୍ୟ । ସେଥିପାଇଁ ପୁଅକୁ ସେ ପିଲାଟି ଦିନରୁ ଲେଖା ପଢ଼ାରେ ମନ ଦେବା ପାଇଁ ତାଗିଦ୍ କରୁଥିଲେ । ପୁଅ ଚଗଲା । ବାପାଙ୍କ କଥାକୁ କାନ ଦେଲାନାହିଁ । ବାପା ଯେ ଠିକ୍ କଥା କହୁଥିଲେ, ତାର ବୟସ ହେବାପରେ ସେ ଅନୁଭବ କଲା ।

ଏ ବୟସରେ ନିଜ ରାଜ୍ୟରେ ଜ୍ଞାନ ଆହରଣ କରିବାର ବ୍ୟବସ୍ଥା କଲେ, ଲୋକଙ୍କ ଆଖିରେ ସେ ଛୋଟ ହୋଇଯିବ ।

ସେଥିପାଇଁ ବିଦେଶ ଯାଇ ଜ୍ଞାନ ଆହରଣ ତାକୁ କରିବାକୁ ହେବ । ଏହା ଥିଲା ତାର ମାନସିକ ନିଷ୍ପତ୍ତି । ସେ ଏକଥା ତାର ସ୍ତ୍ରୀ ଛଡ଼ା କାହାକୁ କହିଲା ନାହିଁ । ସବୁ ତିନୋଟି ସୁନା ମୋହର ଧରି ବିଦେଶକୁ ବାହାରିଲା ।

ବହୁ ଦୂର ଅତିକ୍ରମ ପରେ ବାଟରେ ସେ ଜଣେ ଲୋକକୁ ଦେଖିଲା । ସେତେବେଳେ ସେ ହଳ କରୁଥାଏ । ଲୋକଟିକୁ ଦେଖି ତା ମନର ଆସ୍ଥା ଆସିଲା । ସେ ତା ପାଖକୁ ଯାଇ ଗୁଣ୍ଡୀ ମାଗିଲା । କିଛି ଗୁଣ୍ଡୀ ଖାଇସାରିବା ପରେ ପଚାରିଲା—"ଏ ମୁଲକରେ କେହି ଜ୍ଞାନୀ ଗୁଣୀ ଓ ବିଜ୍ଞ ଲୋକ ଅଛନ୍ତି ?" ଲୋକଟି ପଚାରିଲା—"କଅଣ ପାଇଁ ସେପରି ଲୋକ ତୁମେ ଖୋଜୁଛ ?" ରାଜପୁତ୍ର କହିଲା—"ମୁଁ ଜ୍ଞାନୀ ଓ ବିଜ୍ଞ ହେବାକୁ ଘୂରି ବୁଲୁଛି । ପରାମର୍ଶ ପାଇଁ ସେପରି ଲୋକଟିଏ ମୋର ଦରକାର ।"

ସେ ଲୋକଟି କହିଲା—"ବିନା ମୂଲ୍ୟରେ କେହି ଜ୍ଞାନ ଦିଏ ନାହିଁ । ତୁମେ ଯଦି ମୂଲ୍ୟ ଦେବ, ମୁଁ ମଧ୍ୟ ତମକୁ ଜ୍ଞାନ ଦେବି ।" ରାଜପୁତ୍ର ପ୍ରତି ଉପଦେଶ ପାଇଁ ଗୋଟିଏ ସୁନା ମୋହର ଦେବ ବୋଲି ରାଜିହେଲା । ତାପରେ ସେ ଲୋକଟି କହିଲା "ମୁଁ ଯାହା କହୁଛି ତାକୁ ମନ ଧ୍ୟାନ ଦେଇ ଶୁଣ । ତୁମେ ତ ରାଜପୁତ୍ର । ତୁମେ ତମର ବନ୍ଧୁ ବା ପ୍ରଜା ପାଖକୁ ଗଲେ, ସେମାନେ ତମକୁ ଖଟ, ଚୌକି କମ୍ବା ଆଗରୁ ପରିହୋଇଥିବା ମଶିଣା ବା ଆସନ ଉପରେ ବସିବାକୁ ଅନୁରୋଧକରିବେ । କିନ୍ତୁ ତୁମେ ତତ୍‌କ୍ଷଣାତ୍ ସେ ଆସନ ଗ୍ରହଣ କରିବନାହିଁ । ସେ ଆସନକୁ ଗୋଟିଏ ପଟକୁ ଟିକିଏ ଟାଣିନେଇ ତାକୁ ଦେଖିବ । ତାପରେ ଆସନ ଗ୍ରହଣ କରିବ । ଏହା ହେଲା ମୋର ପ୍ରଥମ ଉପଦେଶ । ଏହାର ମୂଲ୍ୟ ଏକ

ମୋହର । ମୋତେ ଦେଇଦଅ ।” ରାଜପୁତ୍ର ମୋହରଟିଏ ବାହାର କରି ସେ ଲୋକ ହାତରେ ଦେଲା ।

ତାପରେ ସେ ଭଦ୍ରବ୍ୟକ୍ତି କହିଲା—“ତୁମେ ତ ରାଜପୁତ୍ର । ଜନସାଧାରଣଙ୍କ ଠାରୁ ଊର୍ଦ୍ଧ୍ୱରେ । ତେଣୁ ସମସ୍ତେ ଗାଧୋଉ-ଥିବା କୁଠରେ ସ୍ନାନ କରିବନାହିଁ । ଅଣକୁଠରେ ଗାଧୋଇବ । ଏହା ହେଲା ମୋର ଦ୍ୱିତୀୟ ଉପଦେଶ । ମୋର ପ୍ରାପ୍ୟ ଦ୍ୱିତୀୟ ମୋହରଟି ମୋତେ ଦେବା ହେଉ ।” ରାଜପୁତ୍ର ଦ୍ୱିତୀୟ ମୋହରଟି ବି ଦେଲା ।

ଭଦ୍ରବ୍ୟକ୍ତି ପୁଣି କହିବାକୁ ଲାଗିଲା—“ତୁମେ ତ ରାଜପୁତ୍ର । ଲୋକମାନଙ୍କର ଯେତେ ଦ୍ୱନ୍ଦ୍ୱ ହେବ, ସେସବୁ ମୀମାଂସା ପାଇଁ ସେମାନେ ତୁମ ପାଖକୁ ଆସିବେ । ତୁମେ ସେମାନଙ୍କର ମନ ଧ୍ୟାନ ଦେଇ ଶୁଣିବ । ତୁମେ ତ ଏକା କେଉଁଠି ନଥିବ, ତୁମ ପାଖରେ ବହୁଲୋକ ଥିବେ । ଏପରିକି ତମର ପରାମର୍ଶ-ଦାତା ଥାଇପାରନ୍ତି । କୌଣସି ନିଷ୍ପତ୍ତି ଦେବାପୂର୍ବରୁ ସେମାନଙ୍କର ମତାମତ ଆଗ ନେବ । ନିଜର ବିଚାର ବା ବୁଦ୍ଧି ଉପରେ ଗର୍ବ କରିବ ନାହିଁ । ଅଧିକ ଲୋକଙ୍କର ମତ ଯାହା ହେବ, ହେବ, ତାକୁ ଗ୍ରହଣ କରିନେବ । ଏହା ହେଲା ମୋର ତୃତୀୟ ଉପଦେଶ । ମୋର ପ୍ରାପ୍ୟ ତୃତୀୟ ମୋହର ଦେବା ହେଉ ।” ରାଜପୁତ୍ର ତୃତୀୟ ମୋହରଟି ଦେଇ କହିଲା—“ମୋ ପାଖରେ ଯାହା ମୋହର ଥିଲା, ସେ ସବୁ ଦେଇଦେଲି ।”

ଭଦ୍ରବ୍ୟକ୍ତିଟି କହିଲା—“ତମ ପାଖରେ ଯାହା ପାରିଶ୍ରମିକ ଥିଲା, ତାହା ଦେଲା ପରେ ତମର ଶିକ୍ଷା ସମାପ୍ତ ହେବାର କଥା । କିନ୍ତୁ ମୋର ଆଉରି ଉପଦେଶ ଅଛି । ସେଥିପାଇଁ ମୁଁ ପ୍ରାପ୍ୟ

ବାହ୍ଵ କରିବ ନାହିଁ । ଏଇଟି ମୋର ଶେଷ ଉପଦେଶ । ଏହାକୁ ମନଦେଇ ଶ୍ରବଣ କର । ତମେ ରାଜପୁତ୍ର । ତମର କ୍ରୋଧରେ ସଂସାର ଉଚ୍ଛନ୍ନ ଯିବ । ସେଥିପାଇଁ ତୁମେ ତମ କ୍ରୋଧକୁ ଦମନ କରିବ । ଯଦି କୌଣସି କଥା ଶୁଣିବା ଦେଖି ତମ ମନରେ କ୍ରୋଧ ଆସେ, ତାହାହେଲେ ଏଥିପାଇଁ ତୁରନ୍ତ କିଛି କାର୍ଯ୍ୟାନୁଷ୍ଠାନ କରିବ ନାହିଁ । କଥାଟି ବିଚାରକୁ ଆଣିବ । ଯାହାକୁ ଦୋଷୀ ବୋଲି କୁହା ଯାଉଥିବ, ତାର କୈଫିୟତ ଶୁଣିବ । ତାକୁ ମଧ୍ୟ ଭଲ ଭାବରେ ବିଚାର କରିବ । ଯଦି ତୁମେ ସେତେବେଳେ ତମର ରାଗର ଯଥାର୍ଥତା ଉପଲବ୍‌ଧି ନ କରିବ, ତାହାହେଲେ ତାକୁ ମୁକ୍ତ କରିବାରେ କୌଣସି କୁଣ୍ଠାପ୍ରକାଶ କରିବ ନାହିଁ ।

ରାଜପୁତ୍ର ଭଦ୍ରବ୍ୟକ୍ତିଙ୍କଠାରୁ ବିଦାୟ ନେଇ ଘରକୁ ବାହୁଡ଼ିଲା । ବାଟରେ ସେ ଉପଦେଶଗୁଡ଼ିକୁ ତର୍ଜମା କରିବାକୁ ଲାଗିଲା । ମନ ଭିତରେ ଆଲୋଚନା କରି ସେ ଦେଖିଲା—ସବୁ ଉପଦେଶ ମୂଲ୍ୟହୀନ । ତାର ପରିଭ୍ରମଣ ଓ ଅର୍ଥବ୍ୟୟ ଲାଭଜନକ ହେଲାନାହିଁ । ସେଥିପାଇଁ ସେ ଦୁଃଖିତ । ଅନୁତପ୍ତ ।

ରାସ୍ତାରେ ଗୋଟିଏ ବଜାର ପଡ଼ିଲା । ସେତେବେଳକୁ ତାକୁ ଭୋକ ହେଲା । ବଜାରରୁ କିଛି ଖାଦ୍ୟ କିଣି ଖାଇବ ବୋଲି ସେ ସ୍ଥିର କରି ବଜାରରେ ପଶିଲା । ତାକୁ ଦେଖି ସବୁ ଦୋକାନୀମାନେ ତାକୁ ତାଙ୍କ ଦୋକାନକୁ ଡାକି ପକାଇଲେ । ସେ ଗୋଟିଏ ଦୋକାନରେ ପଶିଲା । ଦୋକାନୀ ତାକୁ ଦେଖି କୃତ୍ୟ କୃତ୍ୟ । ସେଇ ଦୋକାନରେ କମଳଟିଏ ବିଛା ହୋଇ ଥିଲା—ସେଥିରେ ବସିବା ପାଇଁ ଦୋକାନୀଟି ତାକୁ ଅନୁରୋଧ କଲା । ତାର ପ୍ରଥମ ଉପଦେଶ ମନକୁ ଆସିଲା । ଏହାର ପରୀକ୍ଷା ପାଇଁ ସେ କମଳର ଗୋଟିଏ ମୁଣ୍ଡ ଧରି ଟିକିଏ ଟାଣିଦେଲା । ଯାହା ଦେଖିଲା,

ସେଥିରେ ସେ ଚାଳିବ । ଆଶ୍ଚର୍ଯ୍ୟ । କମଳ ତଳେ ଗୋଟିଏ ଖୋଲା କୂଅ । କମଳରେ ବସିବା ମାତ୍ରକେ ଲୋକଟି ସିଧା କୂଅ ଭିତରକୁ ଗଳିଯିବ । ମୃତ୍ୟୁ ତେଣୁ ଅନିବାର୍ଯ୍ୟ, ଏଥିରେ ସନ୍ଦେହ ନାହିଁ । ବାଟୋଇକୁ ହତ୍ୟାକରି ତାକୁ ଲୁଣ୍ଠନ କରିବାର ଏ ଏକ ଅଭିନବ କୌଶଳ । ରାଜପୁତ୍ର ଅନୁଭବ କଲା । [ଏହି ଉପଦେଶ ସାନ୍ତାଳମାନେ ମାନନ୍ତି । ସେମାନେ ବସିବାକୁ ଦିଆ ହୋଇଥିବା ଆସନକୁ ଏପରିକି ଷ୍ଟୁଲ୍‌କୁ ବସିବା ପୂର୍ବରୁ ଟିକିଏ ଘୁଞ୍ଚାଇ ଦେଇ ଥାଆନ୍ତି ।] ପ୍ରଥମ ଉପଦେଶ ଅମୂଲ୍ୟ, ବିଶ୍ୱାସଯୋଗ୍ୟ ଓ ନିର୍ଭର-ଶୀଳ । ଏହା ହେଲା ରାଜପୁତ୍ରର ଦୃଢ଼ ଧାରଣା ।

ରାଜପୁତ୍ର ଘରକୁ ଯିବା ବାଟରେ ପୁଣି ଚାଲିଲା । ବାଟରେ ଗୋଟିଏ ପୁଷ୍କରିଣୀ ପଡ଼ିଲା । ସେତେବେଳକୁ ଗାଧୁଆ ବେଳ । ସେ ସେଠାରେ ଅଟକିଲା । ଦ୍ୱିତୀୟ ଉପଦେଶକୁ ସମ୍ମାନ ଦେଇ ସେ ତୁଠ ଠାରୁ ଟିକିଏ ଦୂରେଇ ତାର କନିଷ ପଦ ରଖି ଅତୁଠରେ ସ୍ନାନ କଲା । ସେଠି ଭୋଜନ ସାରି ପୁଣି ତା ରାସ୍ତା ଧରିଲା । କିଛି ବାଟ ଗଲା ପରେ ସେ ଦେଖିଲା, ତା ପଇସା ଥିବା ମୁଣିଟି ନାହିଁ । ସେ ଚିନ୍ତା କଲା । ତାର ମନେ ହେଲା—ଗାଧୁଆ ଜାଗାପାଖରେ ସେ ମୁଣିଟି ଛାଡ଼ିଆସିଛି । ତେଣୁ ସେଇଠୁ ସେ ତାର କନିଷପଦ ରଖିଥିଲା, ସେଇଠି ମୁଣିଟି ପଡ଼ିଥିବାର ସେ ଦେଖିଲା । ସେ ଭାବିଲା—ତୁଠରେ ଯଦି ଗାଧୋଇଥାନ୍ତା, ସେଇଠି ତ ଏ ମୁଣି ରଖିଥାନ୍ତା । ବହୁ ଲୋକ ତ ସେଠାରେ ଗାଧୋଇବାକୁ ଆସିଥାନ୍ତେ । ତେଣୁ ଯାହା ହାବୁଡ଼ରେ ଏହା ପଡ଼ିଥାନ୍ତା, ସେ ତାକୁ ନେଇ ଯାଇଥାନ୍ତା । ସେ ଅଣତୁଠରେ ଗାଧୋଇଲା ବୋଲି, କାହାର ଏ ଜାଗାକୁ ଯାତାୟତ ନାହିଁ । ତେଣୁ ଏହାକୁ କାହାର

ଦେଖିବାର ପ୍ରଶ୍ନ ଉଠୁନାହିଁ । ସେଥିପାଇଁ ମୁଣି ସେଇମିତ ପଡ଼ି ରହିଛି । ଏ ଯେ ଏକ ବଡ଼ ଉପଦେଶ, ଏଥିରେ ତା'ର ଆଉ ସନ୍ଦେହ ରହିଲା ନାହିଁ ।

ଆସିବା ବାଟରେ ସନ୍ଧ୍ୟା ହୋଇଗଲା । ସେ ଗୋଟିଏ ଗାଁକୁ ଗଲା । ରାତିଟି ବିଶ୍ରାମ ନେବାପାଇଁ ଗାଁର ମୁଖିଆଙ୍କୁ ଅନୁରୋଧ କଲା । ଆଗରୁ ଜଣେ ବାଟୋଇ ରାତିଟି କଟାଇବା ପାଇଁ ମୁଖିଆଙ୍କ ଠାରୁ ଅନୁମତି ନେଇ ସେ ବାରଣ୍ଡାରେ ଶୋଇ ଯାଇଥିଲା । ମୁଖିଆ ତ ସେଇ ଲୋକ ପାଖରେ ଶୋଇଯିବାକୁ ତାକୁ କହିଲେ । ରାଜପୁତ୍ର ଗଲା । ବାଟୋଇ ଯେଉଁଠି ଶୋଇଥିଲା, ତା ଅଳ୍ପ ଦୂରରେ ଶୋଇଗଲା । ରାତି ପାହିଲା । ଆଉ ବାଟୋଇଟି ଯେ ରାତିରେ ମରିଯାଇଛି, ଏକଥା ଜଣାପଡ଼ିଲା । ଗାଁ ଲୋକେ ସେଠି ରୁଣ୍ଡ ହେଲେ । ଆଲୋଚନା ପରେ ସ୍ଥିର ହେଲା ଯେ ବାଟୋଇର ଶବଟିକୁ ନେଇ ଫିଙ୍ଗି ଦେବାକୁ ହେବ । ଯେ ମଲା ସେ ବାଟୋଇ । ରାଜପୁତ୍ର ତ ବାଟୋଇ । ତେଣୁ ସେମାନେ ଗୋଟିଏ ଶ୍ରେଣୀର ଲୋକ । ତେଣୁ ଗାଁ ଲୋକ ରାଜପୁତ୍ରକୁ ମୃତ୍ଦେହ ଉଠାଇ ନେଇ ପକାଇବାକୁ ବାଧ୍ୟକଲେ । ପ୍ରଥମେ ରାଜପୁତ୍ର ଭାବିଲା— ସେ ରାଜପୁତ୍ର । ମୃତ୍ଦେହ କେବେ ଛୁଇଁ ନାହିଁ । ଆଜି ବି ସେ ଏ କାମ କରିବ ନାହିଁ । ଗାଁବାଲା କିନ୍ତୁ ତାଙ୍କ ଜିଦ୍ଧିରେ ଅଟଳ । କନ୍ଦଳ ସୃଷ୍ଟି ହେଲା । ଏତିକିବେଳେ ତୃତୀୟ ଉପଦେଶ ତାର ମନକୁ ଆସିଲା । ବହୁ ଲୋକଙ୍କ ମତକୁ ଗ୍ରହଣ କରିନେବାଟା ବୁଦ୍ଧିମାନର କାମ । ସେ ହେଳା କଲାନାହିଁ । ମୃତଦେହ ନେଇ ଗଲା । ଗୋଟିଏ ଖାତ ଭିତରେ ପକାଇ ଦେଲା । ସେଠୁ ଆସିଲା-ବେଳେ ସେ ଭାବିଲା—ମୃତ ଲୋକର ପରିଚୟ କ'ଣ ? ସେ କ'ଣ କିଏ ହୋଇଥିଲା । ତାର ସଙ୍କେତ କ'ଣ ? ତା ଦେହରୁ କିଛି ପ୍ରମାଣ

ମିଳପାରେ । ତାକୁ ଚନ୍ନ ଚନ୍ନ କର ଦେଖିବା ମଧ୍ୟ ତାର କର୍ତ୍ତବ୍ୟ । ସେଥିପାଇଁ ସେ ମୁର୍ଦ୍ଦାରକୁ ଓଲଟାଇ ପରୀକ୍ଷା କରିବାକୁ ଲାଗିଲ । ମୁର୍ଦ୍ଦାର ଅଣ୍ଟାରେ ପଟ୍ଟିଟିଏ ଥିଲ ସେଥିରେ କଡ଼ୁତ ଟଙ୍କା ସେ ସମ୍ଭାଳ ରଖିଥିଲ । ସେସବୁ ସେ ସଂଗ୍ରହ କର ଘର ଘର ଅଭିମୁଖେ ପୁଣି ଯାତ୍ରା କଲ ।

ପରଦିନ ସନ୍ଧ୍ୟାବେଳକୁ ସେ ତାର ରାଜ୍ୟର ସୀମାରେ ପହଞ୍ଚ ଯାଇଥିଲ । ବାଟରେ ନରହି ତା ଘରକୁ ସେଇ ରାତିରେ ସିଧା ଯିବାକୁ ସେ ମନସ୍ଥ କଲ । ରାଜବାଟୀରେ ପହଞ୍ଚିଲ ବେଳକୁ ରାତି ଅଧ । କାହାକୁ ସେ ନ ଉଠାଇ ତାର ଶୋଇବା ଘରକୁ ଗଲ । ତା'ର ଶୋଇବା ଘର ଦୁଆର ମୁହଁରେ ହଳେ ଯୋତା ଏବଂ ଖଣ୍ଡାଟିଏ ଥୁଆହୋଇଥିଲ । ତାକୁଦେଖି ସେ ରାଗରେ ନିଆଁ ପାଗଳ ଭଳ ସେ ଚିତ୍କାର କଲ—"ଯେ ସେ ଘରେ ଅଛ ଶୀଘ୍ର ପଦାକୁ ବାହାର ଆସ ।" ସେଦିନ ରାତିରେ ରାଜପୁତ୍ରର ସାନ ଭଉଣୀ ସେ ଘରେ ଶୋଇଥିଲ । ଭାଇର ଚିତ୍କାର ଶୁଣି ଭଉଣୀଟି ପଳାଇବା ପାଇଁ କବାଟ ଖୋଲିଲ । ଭାଇର ଉଗ୍ରମୂର୍ତ୍ତି ଦେଖି ସେ ବ ଡରିଗଲ । ପୁଣି କବାଟକୁ ଭିତରପଟୁ ବନ୍ଦ କରିଦେଲା, ଘର ଭିତରୁ ସେ ଭାଇକୁ ତାର କହିଲ—"ଭାଇ, ଭାଉଜ ଏକୁଟିଆ ଶୋଇଥିବାରୁ ଡର ମାଡ଼ିଲ । ସେଥିପାଇଁ ମୋତେ ଆଣି ପାଖରେ ଶୁଆଇଥିଲେ । ବାହାର ଲୋକଙ୍କୁ ଡରାଇବା ପାଇଁ ବାହାରେ ଯୋତା ଓ ଖଣ୍ଡା ରଖାଯାଇଥିଲ ।"

ରାଜପୁତ୍ର ରାଗରେ ଅନ୍ଧ । ସେ ତା କଥାକୁ ଗ୍ରହଣ କଲଭଳି ଭଉଣୀକୁ ଜଣାଗଲ ନାହିଁ । ସେଥିପାଇଁ ଓଢ଼ଣା ଟାଣି କବାଟ ଫାଙ୍କ ବାଟେ ଭଉଣୀ ତା ମୁହଁକୁ ଭାଇକୁ ଦେଖାଇଲ । ଭଉଣୀକୁ

ଦେଖି ରାଜପୁତ୍ରର ରାଗକମିଲା । ସେ ଏବେ ଶାନ୍ତ ସ୍ଥିର । ରାଜପୁତ୍ର ଚତୁର୍ଥ ଉପଦେଶର ଯଥାର୍ଥତା ଉପଲବ୍ଧି କଲା ।

ମୋହରର ଦେଇ ଯେଉଁ ଉପଦେଶ ସେ ପାଇଛି, ତାହା ଅମୂଲ୍ୟ । ନ ମାନିଥିଲେ ସେ ବିପଦରେ ପଡ଼ିଥାନ୍ତା । ଏପରିକି ନିଜେ ମରିଥାନ୍ତା ଓ ଭଉଣୀକୁ ହତ୍ୟା କରିଥାନ୍ତା । ସେଥିପାଇଁ ଉପଦେଶ ଦାତାଙ୍କୁ ମନେ ମନେ କୃତଜ୍ଞତା ଜ୍ଞାପନ କଲା ।



# ମାଙ୍କଡ଼ ପୁଅ

ଜଣେ ଲୋକର ଛ'ପୁଅ ଆଉ ଦୁଇ ଝିଅ । ସ୍ତ୍ରୀ ତାର ଗର୍ଭବତୀ । ନବମ ପିଲାର ମା' ହେବାକୁ ଯାଉଥାଏ । ଏତିକି ବେଳେ ସ୍ୱାମୀ ତାର ମରିଗଲା । ଠିକ୍ ସମୟରେ ସେ ପିଲା ଜନ୍ମ କଲା । କିନ୍ତୁ ସେଇଟି ମଣିଷ ପିଲା ନୁହଁ । ମାଙ୍କଡ଼ ପିଲା । ସେ ମାଙ୍କଡ଼ ପିଲାକୁ ଫିଙ୍ଗିଦେବାକୁ ସାଇ ପଡ଼ିଶା ବନ୍ଧୁବାନ୍ଧବଙ୍କର ଜିଦ୍ । ସ୍ତ୍ରୀ ଲୋକଟି ଏକଥା କରିବାକୁ ନାରାଜ । ସେ କହିଲା— "ମୋ କୋଳକୁ ମାଙ୍କଡ଼ ପିଲାଟିଏ କାହିଁକି ଦେଲେ, ସେ କଥା ଭୁଦେ ଜାଣନ୍ତି । ଏ ତ ତାଙ୍କର ଆଶୀର୍ବାଦ । ତାଙ୍କ କଥା ମୁଁ ଅନ୍ୟଥା କରିବି ନାହିଁ । ଏ ପିଲାକୁ ପାଳିବି ।" ତା କଥାକୁ ବନ୍ଧୁବାନ୍ଧବ ସାହି ପଡ଼ିଶା କେହି ଶୁଣିଲେ ନାହିଁ । ପିଲାଟିକୁ ଫିଙ୍ଗି ନ ଦେଲେ, ତାକୁ ସେମାନେ ଘରୁ ନିକାଳି ଦେବାକୁ ଧମକ-

ଦେଲେ । ସ୍ତ୍ରୀ ଲୋକଟି ତା କଥାରେ ଅଟଳ । ସେ ସିଧା ସିଧା ସେମାନଙ୍କୁ କହିଲା—"ତୁମମାନଙ୍କର ଯାହା ଇଚ୍ଛା, ତୁମେମାନେ ତାହା କରିପାର । କିନ୍ତୁ ମୁଁ ମୋ ପିଲାକୁ ଛାଡ଼ିପାରିବି ନାହିଁ ।"

ଶେଷକୁ ଗାଁବାଲା ଓ ବନ୍ଧୁବାନ୍ଧବମାନେ ମିଶି ତାକୁ ଘରୁ ବାହାରିବାକୁ କହିଲେ । ସେ ସେମାନଙ୍କ କଥା ମାନି ଘର ଛାଡ଼ି-ଗଲା । ଗାଁ ମୁଣ୍ଡରେ କୁଡ଼ିଆଟିଏ କଲା । ପିଲାଟିକୁ ସାଥିରେ ଧରି ରହିଲା । ମାଙ୍କଡ଼ ପିଲାଟି ଆସ୍ତେ ଆସ୍ତେ ବଡ଼ ହେବାକୁ ଲାଗିଲା । ସେ ମଣିଷ ଭଳିଆ କଥା ବି କହିଲା ।

ଦିନେ ମାଙ୍କଡ଼ ପୁଅର ବଡ଼ ଛ'ଭାଇମାନେ ଚାଷ ଜମି ପ୍ରସ୍ତୁତ କରିବା ପାଇଁ ହାତରେ କୁରାଢ଼ୀ ଧରି ଜଙ୍ଗଲକୁ ଗଲେ । ମାଙ୍କଡ଼ ପିଲାଟି କୁରାଢ଼ୀଟିଏ ଧରି ତାଙ୍କ ସାଥିରେ ଜଙ୍ଗଲକୁ ଗଲା । ଭାଇମାନେ ଖଣ୍ଡେ ଖଣ୍ଡେ ଜମି ଆଦରି ନେଲେ । ତାପରେ କୁରାଢ଼ୀରେ ଗଛହାଣି ତାକୁ ସଫା କରିବାକୁ ଲାଗିଲେ । ମାଙ୍କଡ଼ ପିଲାଟି ସେମାନଙ୍କୁ ପଚାରିଲା—"ମୁଁ କେଉଁ ଜମି ସଫା କରିବି, ମୋତେ ଦେଖାଇ ଦେଉନ ।" ଜଙ୍ଗଲରେ ଯେଉଁଠି ବଡ଼ ବଡ଼ ଗହଳ ଗଛ ଆଉ ଯାହା ସଫା କରିବା ଏକାନ୍ତ ଅସମ୍ଭବ, ମଜା କରିବା ପାଇଁ ସେଇ ଜାଗାକୁ ମାଙ୍କଡ଼ ପିଲାକୁ ଭାଇମାନେ ଦେଖାଇ ଦେଲେ । ସେ ସେଇ ଜାଗାକୁ ଗଲା । କୁରାଢ଼ୀରେ ଗୋଟେ ଗଛକୁ ଚୋଟେ ଦେଲା । କୁରାଢ଼ିଟି ଗଛରେ ଲାଗି ରହିଲା । ତାପରେ ସେ ଜାଗା ଛାଡ଼ି ସେ ଆସି ଭାଇମାନଙ୍କ ପାଖରେ ଗପ ମାରିଲା । ଭାଇମାନେ ସମସ୍ତ ଶକ୍ତି ଦେଇ ଅକ୍ଳାନ୍ତ ପରିଶ୍ରମ କରି ଗଛ ସଫା କରିବାରେ ଲାଗିଥାନ୍ତି । ଅଥଚ ମାଙ୍କଡ଼ ପିଲାଟି ସେଠି ବସି ସେମାନଙ୍କର କାମ ଦେଖେ । ଭାଇମାନେ କାମ ସାରି ଘରକୁ ବାହାରିଲେ, ସେ ଯାଏ । ଗଛରେ ଲାଗିଥିବା

କୁରାଡ଼ୀକୁ ଆଣେ । ତାଙ୍କ ସାଥିରେ ଫେରେ । ଏଇମିତ କେତେ ଦିନ ଚାଲିଗଲା । ଭାଇମାନେ ତାଙ୍କ ଜମି ସଫା କରିଦେଲେ । ସେମାନେ ମାଙ୍କଡ଼ ପିଲାକୁ ପଚାରିଲେ—"ତୁ ଏଠି ସବୁ ସମୟ ବସିରହୁଛୁ । ତୋ ଜମି କପରି ଜଠିଆହୋଇଛି, ଚାଲ ଦେଖିବା" ମାଙ୍କଡ଼ ପିଲାଟି ଭାଇମାନଙ୍କୁ ଧରି ତା ଜାଗା ପାଖକୁ ଗଲା । ସେମାନଙ୍କ ଜାଗାଠାରୁ ଆହୁରି ବଡ଼ ଜାଗାଟିଏ ସେ ସଫା କରିଛି । ବଡ଼ ବଡ଼ ଦ୍ରୁମକୁ ବ ହାଣି ଶୁଆଇ ଦେଇଛି । ଏହା ଦେଖି ଭାଇମାନେ ବସ୍ମିତ । ଆଶ୍ଚର୍ଯ୍ୟ ।

ଭାଇମାନେ କଟା ଗଛ ସବୁ ଶୁଖି ଗଲାରୁ ନିଆଁ ଲଗାଇ ଦେଲେ । ତାପରେ ସେ ଜାଗାକୁ ହଳ କଲେ । ଧାନ ବୁଣିଲେ । ମାଙ୍କଡ଼ପିଲାର କ ତା ମାଆର ହଳ ବଳଦ ନଥିଲା । ତାଙ୍କ ଘରେ କଖାରୁଟିଏ କେବଳ ଥିଲା । ସେ ଯେଉଁ ଜାଗା ସଫା କରିଥିଲା, ସେଠି ସେ କଖାରୁ ମଞ୍ଜି ବୁଣିଦେଲା । ଭାଇମାନେ ଯେତେବେଳେ ତାକୁ ତା ଜମିରେ କ'ଣ ବୁଣିବା କଥା ପଚାରିଲେ, ସେ ସେମାନଙ୍କୁ ଧାନ ବୁଣିଛି ବୋଲି ମିଛ କହିଲା ।

ଭାଇମାନେ ପ୍ରତିଦିନ ତାଙ୍କ ଧାନ କ୍ଷେତକୁ ଯାଆନ୍ତି । ଫସଲର ତତ୍ତ୍ୱ ନିଅନ୍ତି । ମାଙ୍କଡ଼ ପିଲା ତାଙ୍କ ସାଥିରେ କ୍ଷେତକୁ ଯାଏ । ତାଙ୍କ ସାଥିରେ ବ ଫେରେ । ସେ କପରି ଧାନ କରିଛି ବୋଲି ଜାଣିବାକୁ ଭାଇମାନେ ଆଗ୍ରହ କଲେ । ସେମାନେ ତା କ୍ଷେତକୁ ତାର ଅଜାଣତରେ ଗଲେ । ଦେଖିଲେ—ସେ ଧାନ କରି ନାହିଁ । ତା କ୍ଷେତରେ ଖାଲି କଖାରୁ ଗଛ । ସେମାନେ ତାକୁ କଛି କହିଲେ ନାହିଁ । ଥଟ୍ଟାରେ ଖାଲି ହସିବାକୁ ଲାଗିଲେ ।

ଧାନ ପାଚିଲା । ପାଚିଲା ଧାନ ଅମଳ କରି ଠାକୁରଙ୍କୁ ଭୋଗ ଦେବେ । ଉତ୍ସବ କରିବେ । ସେହି ଆୟୋଜନରେ

ଘଇମାନେ ବ୍ୟସ୍ତ । ମାଙ୍କଡ଼ ପିଲାଟି ତାର ଫସଲ ପାଚଲେ, ଘଇମାନଙ୍କର ଉତ୍ସବ ପର ଉତ୍ସବଟିଏ କରିବାକୁ ଆଗ୍ରହୀ । ତେଣୁ ଘଇମାନେ କ'ଣ ସବୁ କରୁଛନ୍ତି ତାକୁ ସେ ଲକ୍ଷ୍ୟ କରୁଥାଏ । ଘଇମାନେ ନୂଆଖିଆ ପାଇଁ ପାଚିଲା ଧାନ ଆଣି ରୁନ୍ଧନ କରି ସବୁ ଦେବା ଦେବୀଙ୍କୁ ଉତ୍ସର୍ଗ କଲେ । ତାପରେ ଭୋଜିକରି ଖାଇଲେ । ସେମାନଙ୍କ ମାଆ ଓ ମାଙ୍କଡ଼ ପିଲାକୁ ସେମାନେ ନିମନ୍ତ୍ରଣ କରିଥିଲେ ।

ମାଙ୍କଡ଼ ପିଲାଟି ମାଆ ସାଥିରେ ଭୋଜିକୁ ଯାଇଥିଲା । ଭୋଜି ସେ ବେଶ୍ ଉପଭୋଗ କଲା । ତାର ତିନି ଚାରିଦିନ ପରେ ତାର ମାଆକୁ ମାଙ୍କଡ଼ ପୁଅଟି କହିଲା—"ଆମର କଖାରୁ ପାଚିଲାଣି । ତୁ ବାରି ଅଗଣା ସବୁ ସଫା କର । ଆମେ ବି ଭୋଜି ଦେବା ।" ସେ ଖାଲି ମା'କୁ ତାର କହିଲା ନାହିଁ । ଭୋଜିକୁ ଘଇମାନଙ୍କୁ ବି ନିମନ୍ତ୍ରଣ କରିଦେଲା । ତାପରେ ସେ ତାର କ୍ଷେତକୁ ଗଲା । ସବୁଠାରୁ ବଡ଼ କାଖାରୁଟି ତୋଳି ଘରକୁ ଆଣିଲା । କୁକୁଡ଼ାର ମୁଣ୍ଡ ଯେମିତି କଟାଯାଏ, ସେମିତି କଖାରୁର ଉପର ଅଂଶ ସେ କାଟି ପକାଇଲା । ସେ ଦେଖିଲା—କଖାରୁ ଭିତରଟା ଧାନରେ ପୂର୍ଣ୍ଣ । ସେ ତା ମା'କୁ କୁଲା ଆଣିବାକୁ କହିଲା । ସେମାନେ କୁଲାରେ କଖାରୁରୁ ଧାନ ଅଜାଡ଼ିଲେ । ତାକୁ ନେଇ ଗୋଟିଏ ଟୋକେଇରେ ରଖିଲେ । ଟୋକେଇଟି ବି ପୂର୍ଣ୍ଣ ହୋଇଗଲା । ଏ କଥା ତ ମା' ପୁଅ ଆଶା କରୁ ନଥିଲେ । ସେଥିପାଇଁ ସେମାନେ ଖୁବ୍ ଖୁସି । କଥାଟା ପ୍ରକାଶ ପାଇଲେ, ସବୁ କଖାରୁ ତାଙ୍କର ଶେଷ ହୋଇଯିବ, ସେହି ଭୟରେ ସେମାନେ କଥାଟିକୁ ଗୁପ୍ତ ରଖିଲେ । ତାପରେ ମାଙ୍କଡ଼ ପୁଅଟି ତା' ମା'କୁ କହିଲା—"ଏ ଧାନ ନେଇ ରୁନ୍ଧନ କର । ଏଥିରେ ଯଦି ଭଲ ଭାତ ହୁଏ,

ସଥେଷ୍ଟ ସୁଜଳ ରାନ୍ଧ । ମେଁ ଭାଇଭାଉଜମାନଙ୍କୁ ଖାଇବାକୁ ଡାକିବ । ମନବୋଧ କରି ଖାଇବାକୁ ଦେବ । ସେମାନେ ତାଙ୍କ ଉତ୍ସବକୁ ଆମକୁ ଡାକିଥିଲେ । ଅଳ୍ପ ଅଳ୍ପ ଖାଇବାକୁ ଦେଇଥିଲେ ଭୁ ତାର ଆଉ ପୁନରାବୃତ୍ତି କରିବୁ ନାହିଁ । ଦରକାର ପଡ଼ିଲେ ମୁଁ ଆଉରି କଖାରୁ ବେଚି ଆଣିବି ।”

ଭୋଜି ଦିନ, ତାର ଭାଇଭାଉଜମାନେ ଭାବିଲେ—ମାଙ୍କଡ଼ ପିଲା ତ କଖାରୁ କରିଥିଲା । ସେ ଯେ ସୁଜଳ ଆଣି ରାନ୍ଧିବ ଏ ବିଶ୍ବାସ ତାଙ୍କର ନ ଥିଲା । ତେଣୁ ସେମାନେ ଭୋଜିକୁ ଆସିବାର ମତଲବରେ ନ ଥିଲେ । ସେମାନେ ଭୋଜିକୁ ନ ଆସିବାର ଦେଖି ମାଙ୍କଡ଼ ପିଲା ଗଲା । ସେମାନଙ୍କୁ ଡାକି ଆଣିଲା । ଏତେ ସୁଜଳ ରନ୍ଧା ହେବାର ଦେଖି ସେମାନେ ଆଶ୍ଚର୍ଯ୍ୟ । ପେଟପୂରି କରି ଖାଇ ସନ୍ତୋଷ ହେଲେ ।

କଖାରୁ ସବୁ ପାଚିଗଲାରୁ ମାଙ୍କଡ଼ ପିଲାଟି ସେସବୁ ଘରକୁ ବେଚି ଆସିଲା ! ସେଥିରୁ ଯେଉଁ ଧାନ ବାହାରିଲା, ତାକୁ ବର୍ଷଯାକ ଖାଇବା ପାଇଁ ସାଇତି ରଖିଲା ।

ଏହା ଭିତରେ କିଛି ଦିନ ବିତିଗଲା । ଭାଇମାନେ ଘୋଡ଼ା କିଣି ବାହାରିଲେ । ମାଙ୍କଡ ପୁଅଟି ତାଙ୍କ ସାଥୀରେ ଘୋଡ଼ାଟିଏ କିଣିବାକୁ ବାହାରିଲା । କିନ୍ତୁ ତା ପାଖରେ ଘୋଡ଼ା କିଣିବାକୁ ପଇସା ନଥିଲା । ତେଣୁ ସେ ଗୋଟିଏ ବଡ଼ା ଦଉଡ଼ି ସାଥିରେ ଧରି ନେଇଗଲା । ତାକୁ ସାଥୀରେ ନେବାକୁ ଭାଇମାନେ ଲଜ୍ଜିତ ଅନୁଭବ କଲେ । ତେଣୁ ସେମାନେ ତାକୁ ସାଥୀରେ ନେଲେ ନାହିଁ । ବରଂ ତଡ଼ି ଦେଲେ । ମାଙ୍କଡ଼ ପୁଅଟି ଆଗକୁ ଚାଲିଗଲା । ଘୋଡ଼ା ଯେ କେବେ ତା ପାଖରେ ଆଗ ବି ପହଞ୍ଚିଲା ।

ଭାଇମାନେ ଯତ୍ନାଅ ଯତ୍ନାଅ ସନ୍ଧ୍ୟା ହୋଇଗଲା । ରାତିରେ ତ ଘୋଡ଼ା କଣି ଆସି ହେବ ନାହିଁ । ତେଣୁ ସକାଳେ ଘୋଡ଼ା କଣି ଆସିବେ ବୋଲି ସେମାନେ ସେଠି ରାତିଟି ରହିଲେ । ମାଙ୍କଡ଼ ପୁଅଟିକୁ ତାଙ୍କ ପାଖରେ ରହିବାକୁ ଭାଇମାନେ ଜାଗା ଦେଲେ ନାହିଁ । ତେଣୁ ସେ ରାତିଟି ଘୋଡ଼ାଶାଳର ଉପର ଉପରେ ରହିଗଲା ।

ଘୋଡ଼ାମାନଙ୍କ ମଧ୍ୟରେ କିଏ କେତେ ଦ୍ରୁତଗତିରେ ଯାଇପାରେ ସେ ବିଷୟରେ ରାତିସାରା ଆଲୋଚନା ଚାଲିଲା । ମାଈ ଘୋଡ଼ାଟିଏ କହିଲା—"ପ୍ରତି ଲମ୍ଫରେ ସେ ବାରକୋଶ ସ୍ଥଳରେ ଓ ବାରକୋଶ ଆକାଶରେ ଯାଇପାରେ ।" ଏକଥା ମାଙ୍କଡ଼ ପୁଅଟି ଶୁଣିଲା । ସେଇଠୁ ସେ ଉପରୁ ଓହ୍ଲାଇଲା । ଲୁହା କଣ୍ଟାଟିଏ ନେଇ ମାଈ ଘୋଡ଼ାର ଖୁରରେ ପୂରାଇ ଦେଲା ।

ପରଦିନ ଦିନ ପାଇଁ ସବୁ ଘୋଡ଼ାମାନଙ୍କୁ ପରୀକ୍ଷା କରାଗଲା । ମାଈ ଘୋଡ଼ାଟି ଖୋଟେଇଥାଏ । ତେଣୁ କେହି ତାକୁ ପସନ୍ଦ କଲେ ନାହିଁ । ଭାଇମାନେ ତାଙ୍କ ଘୋଡ଼ା କଣି ଘରକୁ ଚାଲି ଆସିଲେ । ଆଜି ଯେଉଁମାନେ ଆସିଥିଲେ, ସେମାନେ ମଧ୍ୟ ତାଙ୍କ ପସନ୍ଦ ମୁତାବକ ଘୋଡ଼ା ନେଇଗଲେ । ବାକି ମାଈ ଘୋଡ଼ାଟି ରହିଗଲା ।

ଶେଷକୁ ମାଙ୍କଡ଼ ପୁଅଟି ଘୋଡ଼ା ବିକେତା ପାଖକୁ ଗଲା । ମାଈ ଘୋଡ଼ାଟି କାହିଁକି ଖୋଟାଉଛି ବୋଲି ସେ ଘୋଡ଼ା ବିକେତାକୁ ପଚାରିଲା । ତାପରେ ତାର ଚିକିତ୍ସା କରିବାକୁ ପରାମର୍ଶ ଦେଲା । ଘୋଡ଼ାର ବିକେତା କହିଲା—"ସେ ଘୋଡ଼ାଟି କୌଣସି କାମର ନୁହେଁ । ସେଟା ଖୋଗାକ୍ରାନ୍ତ । ଘୋଡ଼ାର ବେଗ

ହେଲେ ମୃତ୍ୟୁ ତାର ଅନିବାର୍ଯ୍ୟ ।” ମାଙ୍କଡ଼ ପୁଅଟି କହିଲା —“ଯଦି ତୁମେ ବଡ଼ାଏ ଦଉଡ଼ି ନେଇ ଘୋଡ଼ାଟିକୁ ବାନ୍ଧଦେବ, ସେ ଘୋଡ଼ାଟିକୁ ମୁଁ ନେଇଯିବି ।” ଏକଥା ଶୁଣି ଘୋଡ଼ା ବନ୍ଧେଇଚାଟି ଭାବିଲା—ଘୋଡ଼ାଟି ତ ମରିଯିବ, କିଛୁ ମିଳିବ ନାହିଁ । ବରଂ ଯାହା ମିଳୁଛି, ତାହା ନାହିଁ ଠାରୁ ଭଲ । ସେ ମାଙ୍କଡ଼ ପୁଅର କଥାରେ ରାଜି ହୋଇଗଲା । ଦଉଡ଼ି ବଡ଼ାଟି ଉପରେ ଘୋଡ଼ାଟି ଦେଇଦେଲା । ମାଙ୍କଡ଼ ପୁଅଟି ଘୋଡ଼ାଟିକୁ ଧରି ଘୋଡ଼ା ବନ୍ଧେଇଚାର ଦୃଶ୍ୟ ସୀମା ପାର ହେବା ପର୍ଯ୍ୟନ୍ତ ଘୋଡ଼ାକୁ ଚଲାଇ ଚଲାଇ ଆଣିଲା । ତାପରେ ତାର ଖୁରାରୁ କଣ୍ଟାଟି ବାହାର କରିଦେଲା । ତେଣୁ ଘୋଡ଼ାର ସୁସ୍ଥହେଇବା ଭଲଗଲା । ସେ ଘୋଡ଼ାରେ ବସି ଘରକୁ ବାହାରିଲା । ବାଟରେ ସେ ଭାଇମାନଙ୍କୁ ଘୋଡ଼ାରେ ଆସୁଥିବାର ଦେଖିବା ମାତ୍ରକେ ସେ ଘୋଡ଼ାକୁ ଆକାଶରେ ଉଡ଼ାଇ ଆଣିଲା । ଫଳରେ ଭାଇ-ମାନଙ୍କୁ ପାର ହେଲାବେଳେ ଭାଇମାନେ ତାକୁ ଦେଖି ପାରିଲେ ନାହିଁ । ସେ ଆଗ ଘରେ ପହଞ୍ଚିଗଲା । ବାଡ଼ିରେ ଘୋଡ଼ାଟିକୁ ବାନ୍ଧି ସେ ଗାଧୋଇ ଗଲା । ତାପରେ ଆସି ଖାଇ ପିଇ ଭାଇ-ମାନଙ୍କୁ ଅପେକ୍ଷା କଲା ।

ପ୍ରାୟ ଘଣ୍ଟାଏ ପରେ ଭାଇମାନେ ଆସି ଘରେ ପହଞ୍ଚିଲେ । ମାଙ୍କଡ଼ ପିଲା ଓ ତା’ର ଘୋଡ଼ାକୁ ଦେଖି ସେମାନେ ଆଶ୍ଚର୍ଯ୍ୟ । ସେମାନେ ମାଙ୍କଡ଼ ପିଲାକୁ ପଚାରିଲେ—“ଆମେ ଆସିଲା ବେଳକୁ ତୁ ତ ଘୋଡ଼ାବିକାଳୀ ପାଖରେ ଥିଲୁ । ତୁ କିପରି ଆସି ଆଗ ପହଞ୍ଚିଲୁ ?”

ମାଙ୍କଡ଼ ପିଲାଟି ଅତି ଗର୍ବ ସହକାରେ କହିଲା—‘ମୋ ଘୋଡ଼ା ବଳୁଆ । ନିମିଷକେ ସେ ବହୁ ଦୂର ଯାଇପାରେ ।

ସେଥିପାଇଁ ସେ ସେମାନଙ୍କୁ ଠପି ଆସିଲି । ସେମାନେ ତାକୁ ଦେଖିବ ପାରିଲେ ନାହିଁ ।”

ଭାଇମାନେ ତା କଥାକୁ ଅବିଶ୍ୱାସ କଲେ । ତା ଘୋଡ଼ା ଉପର ଦୌଡ଼େ ପରୀକ୍ଷା ପାଇଁ ସେମାନେ ଆହ୍ୱାନ ଦେଲେ । ଦୌଡ଼ ଦୁଇ ତିନ ଦିନ ପରେ ହେବା ପାଇଁ ସ୍ଥିର ହେଲା । ଦୌଡ଼ ଦିନ ଘୋଡ଼ାଟି ବାର କୋଶ ଚଲେ ଆଉ ବାର କୋଶ ଉପରେ ଯିବା ଯୋଗ୍ୟ ସବୁ ଘୋଡ଼ାଙ୍କୁ ଟପିଗଲା । ଭାଇମାନେ ଘୋଡ଼ାଟିକୁ ବଦଳ କରିବା ପାଇଁ କହିଲେ । ମାଙ୍କଡ଼ ପିଲା କହିଲା—“ତମେମାନେ ତ ବାଛି ବାଛି ଭଲ ଘୋଡ଼ା ଅଣିଲ । ତେଣୁ ବଦଳର ପ୍ରଶ୍ନ କାହିଁକି ଉଠୁଛି ?”

ଦୁଇ ତିନ ବର୍ଷ ପରେ ମାଙ୍କଡ଼ ପିଲାଟି ଧନଶାଳୀ ହୋଇଗ । ଏବେ ତାର ବିବାହ କରିବାକୁ ଇଚ୍ଛା । ଏଥିପାଇଁ ସେ ତାର ମାଆକୁ କନ୍ୟା ଖୋଜିବାକୁ ବାଧ୍ୟ କଲା । ଏକଥା ଶୁଣି ମା ତାର ବ୍ୟସ୍ତ । ବିବ୍ରତ । ମାଙ୍କଡ଼କୁ କିଏ କନ୍ୟା ଦେବ ? ସେକଥା ସେ ବା କାହାକୁ କହିବ ? ତାହା ସେ ସ୍ଥିର କରି ପାରିଲା ନାହିଁ । ଶେଷକୁ ମା କହିଲା—“ପୁଅରେ ତୁ ତ ଏତେ କାମ କରି ପାରୁଛୁ, ତୋ ପାଇଁ ତୁ କନ୍ୟା ଦେଖ । ମୁଁ ପାରିବି ନାହିଁ ।”

ମା କଥା ଶୁଣି ମାଙ୍କଡ଼ ପିଲାଟି କନ୍ୟା ଖୋଜି ବାହାରିଲା । ସେ ଗୋଟିଏ ପୋଖରୀ ପାଖରେ ପହଞ୍ଚିଲା । ସେଠି ବହୁତ ଝିଅ ଗାଧୋଉଥିଲେ । ସେମାନେ ତାଙ୍କର ବଦଳିବା ପାଇଁ ଲୁଗା ସବୁ ଗାଧୁଆ ତୁଠରେ ଥୋଇଥିଲେ । ମାଙ୍କଡ଼ଟି ତାହା ଭିତରୁ ଗୋଟିଏ ଲୁଗା ନେଇ ଗଛ ଉପରକୁ ଉଠିଗଲା । ଯାହାର ଲୁଗା

ସେ ସାଧୋଇସାରି କୂଳକୁ ଆସି ଲୁଗା ଖୋଜିଲା । ସେ ତା' ଲୁଗା କେଉଁଠି ପାଇଲା ନାହିଁ । ଶେଷରେ ଲୁଗାଟି ଗଛରେ ଝୁଲୁଥିବାର ଦେଖିଲା । ସେ ଅନ୍ୟ ଜଣକ ଠାରୁ ଲୁଗା ମାଗି ପିନ୍ଧିଲା । ତାପରେ ଗଛମୂଳକୁ ଆସି ମାଙ୍କଡ଼କୁ ଲୁଗାଟି ମାଗିଲା । ମାଙ୍କଡ଼ କହିଲା—“ଯଦି ତୁ ମୋତେ ବିବାହ କରିବାକୁ ରାଜି ହେବୁ, ମୁଁ ତୋତେ ଲୁଗାଟି ଫେରାଇ ଦେବି ।” ମାଙ୍କଡ଼ଟି ଖାଲି କଥା କହୁ ନ ଥିଲା, କହିବା ଭଙ୍ଗୀ ତାର ଏତେ ଭଲ ଯେ ସେ ଝିଅଟିର ହୃଦୟ କିଣିନେଲା । ତାପରେ ମାଙ୍କଡ଼ଟି ଝିଅଟିର ବାଳଧରି ଉପରକୁ ଉଠାଇନେଲା । ଝିଅଟି ତାର ସାଙ୍ଗମାନଙ୍କୁ ତାକୁ ସେଇଠି ଛାଡ଼ି ଚାଲିଯିବାକୁ କହିବାରୁ ସେମାନେ ଚାଲି ଆସିଲେ । ମାଙ୍କଡ଼ ପୁଅ ତାକୁ ପିଠିରେ ପକାଇ ଘରକୁ ଘେନି-ଆଣିଲା ।

ଝିଅର ବାପ ଭାଇମାନେ ଧନୁଶର ଧରି ମାଙ୍କଡ଼କୁ ଖୋଜି ଆସିଲେ । ଏଥି ଭିତରେ ମାଙ୍କଡ଼ଟି ଏତେଦୂର ଚାଲି ଆସିଥିଲା ଯେ ସେମାନେ ତାର ସନ୍ଧାନ ପାଇଲେ ନାହିଁ । ପୁଅ ମାଙ୍କଡ଼ଟି ସେତେବେଳେ କନାଟି ଧରି ଗାଁରେ ପହଞ୍ଚିଲା, ସେ ଯେ ଝିଅଟିଏ ବାହା ହେବାକୁ ଆଣି ପାରିଛି, ସେଥିପାଇଁ ଗ୍ରାମବାସୀ-ମାନେ ହସିଲେ । ଆଶ୍ଚର୍ଯ୍ୟ । ଡେରି ନ କରି ବିବାହ କାର୍ଯ୍ୟ ସମ୍ପନ୍ନ କରିଦେଲେ । ଏହି ବିବାହ ଉତ୍ସବରେ ତାର ବନ୍ଧୁବାନ୍ଧବ ଓ ଗ୍ରାମବାସୀମାନେ ଯୋଗ ଦେଇଥିଲେ । ପୁଅ ମାଙ୍କଡ଼ଟି ତା ସ୍ତ୍ରୀ ସହିତ ଆନନ୍ଦରେ ତାର ଜୀବନ କଟାଇ ଦେଲା ।



# ଗାଈଆଳ କିପରି ତା'ର ସ୍ତ୍ରୀ ପାଇଲା

ବହୁଦିନ ତଳର କଥା । ଗୋଟିଏ ଗାଈଆଳ ଥିଲା । ତା'ର ଅନେକ ଗାଈ । ସେମାନଙ୍କୁ ସେ ଖୁବ୍ ଭଲପାଏ । ତାଙ୍କର ଯତ୍ନ ନିଏ । ସେଥିରେ କେତେବେଳେ ହେଳା କରେ ନାହିଁ । ସବୁଦିନ ସକାଳୁ ତାଙ୍କୁ ସେ ଚରାଇବାକୁ ନିଏ । ଦ୍ୱିପ୍ରହର ତ ବିଶ୍ରାମର ବେଳ । ତେଣୁ ସେମାନଙ୍କୁ ବିଶ୍ରାମ ପାଇଁ ପାଖ ଅଶ୍ୱତ୍ଥ ଗଛ ମୂଳକୁ ସେ ଅଡ଼ାଇ ନିଏ । ସେ ଆଉ ଗାଈମାନେ ସେଇଠାରେ ବିଶ୍ରାମ ନିଅନ୍ତି । ଦିନେ ଅଶ୍ୱତ୍ଥ ଗଛଟି ସେ ଗାଈଆଳ ପିଲାକୁ କହିଲା—"ତୁ ଯଦି ପ୍ରତିଦିନ ମୋ ମୂଳରେ ଦୁଧ ଢାଳିବୁ, ମୁଁ ତତେ ବରଟିଏ ଦେବି ।" ଗାଈଆଳ ପିଲା ବର ପାଇଁ ଆଗ୍ରହୀ ନୁହଁ । ସେ ଭାବିଲା ଗଛଟି କହୁଛି ଦୁଧ ମାଗୁଛି । ଦେଲେ, ତାର ବିଶେଷ କ୍ଷତି ହେବନାହିଁ । ବରଂ ଗଛଟି ସନ୍ତୁଷ୍ଟ ହେବ । ଏପରି ସ୍ଥଳେ ଦେବାଟା ଉଚିତ୍ । ସେଥିପାଇଁ ପ୍ରତିଦିନ ସେ ଗଛ ମୂଳରେ ଦୁଧ ଢାଳେ । ଦିନେ ସେ ଦୁଧ ଦେଲାବେଳେ ଦେଖିଲା—ଗଛମୂଳଟି ଫାଟିଯାଇଛି । ସେ ଭାବିଲା—ଗଛର ଚେର ମୋଟା ହେବା ଫଳରେ ମୂଳମାଟି ଫଟାଇ ଦେଇଛି । ତେଣୁ ତା' ଉପରେ ସେ କୌଣସି ଗୁରୁତ୍ୱ ଦେଲାନାହିଁ । ଆଉଦିନେ ସେ ଦୁଧ ଢାଳୁଥାଏ ଏତିକିବେଳେ ସେଇ ଫାଟଦେଇ ସାପଟିଏ ବାହାରି ଆସିଲା । ତାକୁ ଦେଖି ଗାଈଆଳଟି ସ୍ତମ୍ଭିତ । ଭୟରେ ଥରହର । ସାପ ଯେ ତାକୁ ଦଂଶନ କରିବ, ସେଥିରେ ସେ ନିଃସନ୍ଦେହ । ସେଥିପାଇଁ ସେ ମୂର୍ଚ୍ଛା ଯାଇ ପଡ଼ିଗଲା । ସାପଟି ଗାଈଆଳର ଅବସ୍ଥା ଦେଖି ଦୁଃଖିତ । ବ୍ୟସ୍ତ । ଆଶ୍ୱାସନା ଦେବା ପାଇଁ ସେ

ଗାଈଆଳ ପିଲା ଆଡ଼କୁ ଅନାଇ କହିଲା—"ତୁ ମୋତେ ଜମା ଡର ନାହିଁ । ମୁଁ ମାଟି ଭିତରେ ବନ୍ଦ ହୋଇଥିଲି । ତୁ ଗଛ ମୂଳରେ ଢାଳୁଥିବା ଦୁଧ ପିଇ ମୁଁ ବଞ୍ଚିଗଲି । ଖାଲି ସେତିକି ନୁହେଁ, ମୋଟା ମଧ୍ୟ ହୋଇଗଲି । ସେଥିପାଇଁ ମାଟି ଫାଟିଗଲା । ମୁଁ ପଦାକୁ ବାହାରି ଆସିଲି । ମୁଁ ତୋ ପାଖରେ କୃତଜ୍ଞ । ଋଣୀ । ଯାହା ତୁ ବର ମାଗିବୁ ମୁଁ ତୋତେ ଦେବି ।"

ଗାଈଆଳ ପିଲାଟି ଏଥର ଆଶ୍ୱସ୍ତ । ସାହାସ ତାର ଫେରି ଆସିଲା । ସେ କହିଲା—"କଅଣ ମାଗିବାକୁ ହେବ, ମୁଁ ଜାଣି ନାହିଁ । ମୋ ଜୀବନ ତ ବେଶ୍ ଖୁସିବାସିରେ କଟି ଯାଉଛି । ଅସୁବିଧା କିଛି ହେଉନାହିଁ । ତୋର ଯଦି ବର ଦେବାକୁ ଏକାନ୍ତ ଇଚ୍ଛା ହେଉଛି, ତାହା ହେଲେ ତୋର ଯାହା ଇଚ୍ଛା ହେଉଛି ସେ ବର ଦେଇ ଦେ ।"

ସାପଟି ଗାଈଆଳକୁ ତା' ପାଖକୁ ଡାକିଲା । ତା' ମୁଣ୍ଡ ପାଖରେ ନିଃଶ୍ୱାସ ଛାଡ଼ିଲା । ଗାଈଆଳ ମୁଣ୍ଡରେ ବୋଝେ ବାଳ । ସେ ପୁଣି ଖୁବ୍ ଲମ୍ବା । ସାପର ନିଶ୍ୱାସ ବାଜି ସେସବୁ ସୁନା ଭଳି ଦେଖାଗଲା । ସାପଟି କହିଲା—'ଏ ବାଳ ତୋତେ ଜନ୍ୟାଟିଏ ବିବାହ କରିବାର ବ୍ୟବସ୍ଥା କରିଦେବ । ତୋ ଦେହରେ ଅପୂର୍ବ ଓ ଅଦ୍ଭୁତ ଶକ୍ତି ହେବ । ତୁ ଯାହାକୁ ଯାହା କହିବୁ, ତାହା ସାଥୀ ସାଥୀ ଫଳିଯିବ । ମଣେକର ଜଣକୁ ତୁ ମରି ଯା' ବୋଲି କହିବୁ ସେ ସଙ୍ଗେ ସଙ୍ଗେ ମରିଯିବ । ତୁ ତାକୁ ବଞ୍ଚିବାକୁ କହିଲେ—ସେ ପୁଣି ବଞ୍ଚିଯିବ । କିନ୍ତୁ ସାବଧାନ, ଏକଥା କାହା ଆଗରେ ବେକୌ ହେଲେ ପ୍ରକାଶ କରିବୁ ନାହିଁ । ଏପରିକି ବିବାହ ପରେ ମଧ୍ୟ ତୋ ସ୍ତ୍ରୀ ଆଗରେ ଏକଥା କହିବୁ

ନାହିଁ । ଯଦି ତୁ ଏହା ପ୍ରକାଶ କରୁ, ତାହା ହେଲେ ସେହି ମୂହୂର୍ତ୍ତରେ ତୋତେ ପ୍ରବଳ ସମସ୍ତ ଶକ୍ତି ଚାଲିଯିବ ।"

କିଛିଦିନ ପରେ ଗାଈଆଳଟି ନଈରେ ଗାଧୋଉଥିଲା । ତା ମୁଣ୍ଡରୁ କିଛି ବାଳ ଉପୁଡ଼ିଗଲା । ସେ ତାକୁ ଗୋଟିଏ ପତରରେ ବାନ୍ଧି ନଈରେ ଭସାଇ ଦେଲା । ନଈର ତଳ ମୁଣ୍ଡରେ ରାଜା ଝିଅଟିଏ ଗାଧୋଉଥିଲା । ସେ ପୁଡ଼ିଆଟି ଭାସି ଭାସି ଯାଇ ତା' ଦେହରେ ଲାଗିଲା । ତା' ଭିତରେ କ'ଣ ଅଛି ଜାଣିବା ପାଇଁ ରାଜା ଝିଅର ଆଗ୍ରହ ହେଲା । ସେ ପୁଡ଼ିଆଟି ଖୋଲି ଦେଖିଲା । ତାହା ଭିତରେ କେତୋଟି ବାଳ ରଖାଯାଇଛି । ସେ ସବୁ ସୁନା ପରି ଝଟକୁ ଥାଏ । ରାଜା ଝିଅ ବାଳଗୁଡ଼ିକ ଆଣି ମାପିଲା । ପ୍ରତ୍ୟେକ ବାଳର ଲମ୍ବ ବାର ଫୁଟ । ଏହା ଦେଖି ରାଜା ଝିଅ ଆଶ୍ଚର୍ଯ୍ୟ । ହସିତ । ସେମାନଙ୍କୁ ବାଳକୁ ତା'ର ପଣତ କାନିରେ ବାନ୍ଧି ସେ ଘରକୁ ଫେରି ଆସିଲା ଓ ଶୋଇବା ଘରେ ପଶି ଭିତର ପଟୁ କବାଟ ବନ୍ଦ କରିଦେଲା । ଯିଏ ଯେତେ ଡାକିଲେ ବା ଯେତେ କଥା କହିଲେ ମଧ୍ୟ ସେ କବାଟ ଖୋଲିଲା ନାହିଁ । ଖାଇବା ତ ଦୂରର କଥା, ଜଳ ଟିକିଏ ବି ସ୍ପର୍ଶ କଲା ନାହିଁ । ଏକଥା ଦେଖି ରାଜା ରାଣୀ ବ୍ୟସ୍ତ ଓ ବିବ୍ରତ । ପ୍ରକୃତରେ ଝିଅର ମନକଥା ଜାଣିବା ପାଇଁ ସେମାନେ ଇଚ୍ଛୁକ । ଆଗ୍ରହୀ । ରାଜା-ଝିଅର ତ ଦାସୀ ଅନେକ । କିନ୍ତୁ ସେମାନଙ୍କ ମଧ୍ୟରୁ ଦୁଇଜଣ ଅନ୍ତରଙ୍ଗ । ଝିଅର ମନକଥା ଜାଣିବା ପାଇଁ ରାଜା ରାଣୀ ସେମାନଙ୍କୁ ପଠାଇଲେ । ସେମାନଙ୍କର ବହୁ ଅନୁନୟ ବିନୟ ପରେ ରାଜା ଝିଅ କବାଟ ଖୋଲିଲା । ସେମାନଙ୍କୁ କହିଲା— "ଆଜି ନଈରେ ଗାଧୋଇବା ବେଳେ ମୁଁ ସୁନା ଭଳି ଝଟକୁଥିବା ବାଳ ପାଇଛି । ଯାହାର ବାଳ ତାକୁ ନ ଦେଖିଲା ପର୍ଯ୍ୟନ୍ତ

ମୁଁ ଅନ୍ନଜଳ ସ୍ପର୍ଶ କରିବ ନାହିଁ । ଯଦି ସେ ବାଳ କୌଣସି ପୁରୁଷର ହୋଇଥାଏ ତାହାହେଲେ ମୁଁ ତାହାକୁ ବିବାହ କରିବ ଏବଂ ଯଦି ଏହା କୌଣସି ସ୍ତ୍ରୀର ହୋଇଥାଏ ତାହାହେଲେ ସେ ମୋ ସାଥିରେ ରହିବ ।"

ରାଜାରାଣୀ ଏକଥା ଶୁଣି ଝିଅଟିକୁ ସାନ୍ତ୍ୱନା ଦେଇ କହିଲେ—"ମା' ଲୋ, ତୁ ବ୍ୟସ୍ତ ହୁଅନାହିଁ । ଏବେ ଲୋକ ଯିବ । ଯାହାର ସେ ବାଳ ତାହାକୁ ଖୋଜି ସାଥିରେ ନେଇ ଆସିବ ।" ଏ ଆଶ୍ୱାସନା ଝିଅ ପ୍ରତି ଯଥେଷ୍ଟ । ସେ ଜାଣେ— ବାପା ତାର କଥାଭ୍ରଷ୍ଟ ନୁହନ୍ତି । ତେଣୁ ଝିଅଟି ବିଛଣାରୁ ଉଠି ଆସି ଖାଇବା ପିଇବା ଠାରୁ ଆରମ୍ଭ କରି ତାର ଦୈନନ୍ଦିନ କାମ ସବୁ କଲା ।

ରାଜା ସଙ୍ଗେ ସଙ୍ଗେ ବାହକମାନଙ୍କୁ ଡକାଇ ନଈରେ ଭାସି ଭାସି ଆସୁଥିବା ବାଳଟିକ ଦେଇ କହିଲେ—"ଏହା ନଈରେ ଭାସି ଆସୁଥିଲା । ତେଣୁ ଏହି ବାଳ ଯାହାର ସେ ନଈରେ ଗାଧୋଉଥିଲା । ଏହା ନିଃସନ୍ଦେହ । ତୁମେମାନେ ନଈ କୂଳେ କୂଳେ ନଈର ଉତ୍ପତ୍ତିସ୍ଥଳ ପର୍ଯ୍ୟନ୍ତ ଚାଲିଯାଅ । ବାଟରେ ଯେତେ ଗାଁ ପଡ଼ିବ ଓ ଯେତେ ଲୋକଙ୍କୁ ଭେଟିବ, ସେମାନଙ୍କ ଠାରୁ ଏ ବାଳ କାହାର ତାହା ସନ୍ଧାନ ନେବ । ଯଦି ଲୋକଟିକୁ ପାଇବ, ତାକୁ ସଙ୍ଗରେ ନେଇ ଆସିବ ।"

ରାଜାଦେଶର ତ ବ୍ୟତିକ୍ରମ ନାହିଁ । ତେଣୁ ବାହକମାନେ ନଈର ଦୁଇ କୂଳରେ ଗଲେ । କିନ୍ତୁ ସେ ସବୁ ବ୍ୟର୍ଥ । ନିଷ୍ଫଳ । ସେମାନେ ଫେରି ଆସି ବାଳଟିକ ରାଜାଙ୍କୁ ଫେରାଇ ଦେଲେ । ଏ କଥା ଶୁଣି ରାଜାଝିଅ ରାଗରେ ନିଆଁ । ସେ ଦଉଡ଼ି ଦେଇ

ଆତ୍ମହତ୍ୟା କରିବ ବୋଲି ଧମକ ଦେଲା । ରାଜା କ'ଣ କରିବେ କିଛି ସ୍ଥିର କରି ପାରିଲେ ନାହିଁ । ରାଜାଙ୍କ ପ୍ରାସାଦରେ ଗୋଟିଏ କାଉ ଓ ଗୋଟିଏ ଶୁଆକୁ ପିଞ୍ଜରାରେ ରଖା ଯାଇଥିଲା । ସେମାନେ ଏକଥା ଶୁଣି କହିଲେ—"ଲୋକଟା ଯଉ ଗାଁରେ ରହୁଥିଲା। ତାହାହେଲେ ବାଘମାନେ ତାକୁ ଖାଇଥା'ନ୍ତେ । ସେ ତ ଜଙ୍ଗଲରେ ରୁହେ । ତେଣୁ ଗାଁ ବାଲା କ'ଣ ବାଟୋଇର ତା' କଥା କପରି ଜାଣିବେ ? ଆମକୁ ଖୋଲିଦିଅ । ଆମେ ଜଙ୍ଗଲରେ ଅନ୍ୱେଷଣ କରି ତାକୁ ବାହାର କରି ଆମ ସାଥିରେ ନେଇ ଆସିବୁ ।" ରାଜା ସେମାନଙ୍କୁ ଖୋଲି ଦେବାକୁ ଆଦେଶ ଦେଲେ । ମଣିଷ ବାହଟରେ ବ୍ୟବହାର ପାଇଁ ଦରକାରୀ ଜିନିଷ ସାଥିରେ ନେଇଯାଏ । ପଶୁପକ୍ଷୀମାନେ କିଛି ଜିନିଷ ସାଥିରେ ନଅନ୍ତି ନାହିଁ । ସେଥିପାଇଁ ସେମାନଙ୍କୁ ପେଟେ ପେଟେ ଖାଇବାକୁ ଦିଆଗଲା । ତାପରେ ସେମାନଙ୍କୁ ଛାଡ଼ି ଦିଆଗଲା ।

କାଉ ଶୁଆ ମୁକ୍ତ ହୋଇ ଜଙ୍ଗଲକୁ ଗଲେ । ଖୋଜି ଖୋଜି ଅଶ୍ୱତ୍ଥ ଗଛ ପାଖରେ ପହଞ୍ଚି ଗଲେ । ସେଠାରେ ସେମାନେ ଦେଖିଲେ—ଗାଈଆଳ ପିଲାଟିଏ ସେଠି ଗଛର ଛାଇରେ ଶୋଇଛି । ପାଖରେ ତାହାର ବଂଶୀଟିଏ । କାଉ ଓ ଶୁଆ ଆସି ସେହି ଗଛ ଉପରେ ବସିଲେ । ଗାଈଆଳକୁ ପାଇଲେ ସିନା ତାକୁ ତାକୁ କପରି ନେବେ, ସେହି ବିଷୟରେ ମସୁଧା କଲେ । ସେମାନେ ଦେଖିଲେ ଯେ ଗାଈଆଳ ପିଲା ହାତରେ ବଂଶୀଟିଏ ଧରି ଶୋଇଛି । ତେଣୁ ପିଲାଟି ବଂଶୀଟିକୁ ନିଶ୍ଚୟ ଖୁବ୍ ଭଲ ପାଏ । ଏହା ତାର ପ୍ରମାଣ । ନିଦର୍ଶନ । ତେଣୁ ବଂଶୀଟିକୁ ତାର ହାତରୁ ଉଡ଼ାଇ ନେଲେ ସେ ତାଙ୍କର ପିଛୁ ଧରିବା ସୁନିଶ୍ଚିତ । ଏହାହେଲା ଉଭୟଙ୍କର ସୁଚିନ୍ତିତ ନିଷ୍ପତ୍ତି ।

ଶୁଆ କାଉକୁ କହିଲା—"ଗାଈମାନଙ୍କୁ ମୋର ଖୁବ୍ ଭୟ । ତେଣୁ ମୁଁ ତାଙ୍କ ପାଖକୁ ଯାଇ ପାରିବ ନାହିଁ । ତୁ ଗୋଟିଏ କାମ କର, ଗାଈମାନଙ୍କ ଭିତରେ ପଶି ସେହି ପିଲାଟି ଠାରୁ ବଂଶୀଟି ନେଇ ଆସେ । ସେ ନିଦରୁ ଉଠି ତୋ ପଛେ ପଛେ ଦୌଡ଼ିବ । ତୁ ହଠାତ୍ ବେଶୀ ଦୂର ଉଡ଼ି ନଯାଇ ଅଳ୍ପ ଦୂର ଯାଇ ତା'ର ପହଞ୍ଚିବା ପର୍ଯ୍ୟନ୍ତ ଅପେକ୍ଷା କରିବୁ । ସେ ସେହି ସ୍ଥାନରେ ପହଞ୍ଚିଲେ ତୁ ପୁଣି କିଛି ବାଟ ଉଡ଼ିଯିବୁ । ଫଳରେ ସେ ତୋର ପିଛା ଛାଡ଼ିବ ନାହିଁ । ଏହିପରି ଭାବରେ ଆମେ ତାକୁ ଜିଆସକୁ ନେଇଯିବା ।" କଥାଟା କାଉ ମନକୁ ପାଇଲା । ସେ ଯାଇ ଗାଈମାନଙ୍କ ଭିତରେ ପଶିଲା । ଗୋଟିଏ ଗାଈ ଉପରୁ ଯାଇ ଆଉ ଗୋଟିଏ ଗାଈ ଉପରେ ବସିଲା । ଏହିପରି ଭାବରେ ସେ ଗାଈଆଳ ପାଖରେ ପହଞ୍ଚି ବଂଶୀଟି ଥଣ୍ଟରେ ଧରି ଉଡ଼ିବାକୁ ଲାଗିଲା । ଏତିକିବେଳେ ଗାଈଆଳର ନିଦ ଭାଙ୍ଗି ଗଲା । ସେ ବଂଶୀଟି ପାଇଁ କାଉର ପିଛା ଧରିଲା । କାଉଟି ଏ ଗଛରୁ ଯାଇ ସେ ଗଛରେ ବସେ । ଗାଈଆଳ ସେଠାକୁ ଗଲେ ସେ ଅନ୍ୟ ଏକ ଗଛରେ ଯାଇ ବସେ । ଏହିପରି ଏ ଗଛ ସେ ଗଛ ହୋଇ ହୋଇ କାଉ ହାଲିଆ ହୋଇଗଲା । ଏଥର ଶୁଆ ବଂଶୀଟିକୁ ତା'ଠାରୁ ନେଇ ଏ ଗଛ ସେ ଗଛ ହେଲା । ଶେଷରେ ସେ ରଜାଙ୍କ ଜିଆସକୁ ପଳାଇ ଆସିଲା । ତା ପଛେ ପଛେ ଗାଈଆଳ ପିଲାଟି । ଶୁଆ ସିଧା ଯାଇ ରଜାଙ୍କ ଝିଅକୁ ବଂଶୀଟି ଦେଇ ଦେଲା । ଗାଈଆଳ ପିଲାଟି ତା' ପଛରେ ଯାଇ ରଜାଝିଅ ପାଖରେ ହାଜର । ରଜାଝିଅ ନିର୍ଦ୍ଦେଶରେ ଭିତର ପଟୁ ତା ଘରର କବାଟ ବନ୍ଦ କରି ଦିଆଗଲା । ରଜାଝିଅକୁ ଗାଈଆଳ ବଂଶୀଟି ମାଗିଲା । ରଜାଝିଅ କହିଲା—"ତମେ ଯଦି ମୋତେ ବିବାହ

କରିବାକୁ ରାଜିହେବ, ତାହାହେଲେ ମୁଁ ତୁମକୁ ବଂଶୀଟି ଦେବି । ନ ହେଲେ ଦେଇ ପାରିବି ନାହିଁ । ଗାଈଆଳ କହିଲା—"ନିବନ୍ଧ ନ ହୋଇ ବିବାହ ହଠାତ୍ ହୁଏନାହିଁ । ଆମର ତ ନିବନ୍ଧ ହୋଇ ନାହିଁ । ବାହାଘର କପରି ହେବ ?"

ରାଜଝିଅ କହିଲା—"ଆମ କଥା ଅନ୍ୟମାନଙ୍କ ଠାରୁ ଅଲଗା । ଭିନ୍ନ । ତଫାତ୍ । ତୁମେ ତୁମର ବାଳକୁ ପୁଡ଼ିଆରେ ପ୍ରସ୍ତାବ ଦେଇ ନଈରେ ଭସେଇ ଦେଇଥିଲ । ସେ ଆସି ମୋ ଦେହରେ ଲାଗିଲା । ଅର୍ଥାତ୍ ସେ ପ୍ରସ୍ତାବ ଦେଲା । ମୁଁ ସେ ପୁଡ଼ିଆ ଖୋଲିଲି । ବାଳକୁ ଦେଖିଲି, ମାପିଲି ଓ ରାଜି ହେଲି । ଅର୍ଥାତ୍ ସମ୍ମତି ଦେଲି । ତେଣୁ ସେତିକିବେଳେ ଆମର ନିବନ୍ଧ ହୋଇଗଲା । ପୁନଃନିବନ୍ଧ ପ୍ରଶ୍ନ କାହିଁକି ଉଠୁଛି ?"

ଗାଈଆଳଟି ନିଜର ବାଳ ଦେଖିବାକୁ ଚାହିଁଲା । ରାଜଝିଅ ବାଳଗୁଡିକ ବାହାର କରି ତାକୁ ଦେଖାଇଲା । ଏହା ଖୁବ୍ ଲମ୍ବା ଓ ସୁନାପରି ଉଜ୍ଜଳ । ଏହା ଯେ ତାହାର ବାଳ ଏ ବିଷୟରେ ତା'ର ଆଉ କୌଣସି ସନ୍ଦେହ ରହିଲା ନାହିଁ । ଏତିକିବେଳେ ତା'ର ସାପ କଥା ମନେ ପଡ଼ିଲା । ଏ ବାଳ ତା'ର ବିବାହ ପାଇଁ ସାହାଯ୍ୟ ହେବ, ଏହାହିଁ ଥିଲା ସାପର ଭବିଷ୍ୟତ ବାଣୀ । ସେ ରାଜା ଝିଅକୁ କହିଲା—"ଆମେ ପରସ୍ପର ପାଇଁ ଉଦ୍ଦିଷ୍ଟ ।" ତାପରେ ରାଜାଝିଅର ଆଦେଶରେ କବାଟ ଖୋଲିଗଲା । ସେ ଗାଈଆଳ ପିଲାକୁ ଧରି ରାଜାରାଣୀଙ୍କ ପାଖକୁ ଆସିଲା । ସେ ସେମାନଙ୍କୁ କହିଲା—"ମୋର ହୃଦୟର ଇଚ୍ଛା ପୂରଣ ହୋଇଛି । ଯଦି ତୁମେମାନେ ମୋର ବିଭାଘର ଉଆସରେ ନ କରିବ ତାହା ହେଲେ ମୁଁ ଗାଈଆଳ ସାଥିରେ ପଳାଇବି । ରାଜାରାଣୀ ଝିଅକଥାରେ ରାଜିହେଲେ । ବିବାହ ଦିନ ସ୍ଥିରହେଲା । ବହୁଲୋକ

ସମ୍ପନ୍ନ ହେଲେ । ଖୁବ୍ ଜାକଜମକରେ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ଗାଈଆଳ ତ ରାଜାଝିଅ ପ୍ରେମରେ ପାଗଳ । ଆଉ କୌଣସି କଥା ସେ ଭାବେନାହିଁ । ଗାଈମାନଙ୍କ କଥା ତା'ର ଚିନ୍ତାଧାରାର ବାହାରେ । ଏହା ଭିତରେ କିଛିଦିନ ଚାଲିଗଲା । ସବୁ ସମୟ ସମାନ ନୁହେଁ । ସବୁ ଉନ୍ମାଦନା ଦୀର୍ଘସ୍ଥାୟୀ ନୁହେଁ । ଗାଈଆଳଟିର ଏବେ ପୁରୁଣା କଥା ମନେ ପଡ଼ିଲା । ତା' ଗାଈଗୁଡ଼ିକୁ ସେ ଖୁବ୍ ଭଲ ପାଉଥିଲା । ମୁହୂର୍ତ୍ତେ ତାଙ୍କୁ ସେ ଛାଡ଼ି ପାରୁ ନ ଥିଲା । ସେ ତାଙ୍କର ଯତ୍ନ ଓ ତତ୍ତ୍ୱ ନେଉଥିଲା । କିନ୍ତୁ ଆସିଲା ବେଳେ କାହାକୁ କିଛି ନ କହି ଓ ତାଙ୍କ ଦାୟିତ୍ୱ କାହାକୁ ନ ଦେଇ ସେ ଚାଲି ଆସିଲା । ତାଙ୍କ ଅବସ୍ଥା କ'ଣ ହେଉଥିବ ? ସେମାନଙ୍କ ଚିନ୍ତା ତାକୁ ବିଚଳିତ, ଚିନ୍ତିତ ଓ ବ୍ୟସ୍ତ କରିଦେଲା । ସେ ନିଶ୍ଚିନ୍ତ ହୋଇ ବସି ପାରିଲା ନାହିଁ । ବେଳେ ବେଳେ ସେମାନଙ୍କ କଥା ଭାବି କାନ୍ଦ ପକାଏ । ବ୍ୟସ୍ତତା ଯୋଗୁଁ ତା'ର ସରସତା ଚାଲିଗଲା । ତା'ର ଗମ୍ଭୀରତା ଓ ବିଷଣ୍ଣତା ରାଜାଝିଅ ଲକ୍ଷ୍ୟକଲେ । ରାଜାଝିଅ ଗାଈଆଳର ଏପରି ଅବସ୍ଥା ଦେଖି ଦୁଃଖିତ । ତାର ପ୍ରତିକାର ପାଇଁ ବ୍ୟସ୍ତ । କିନ୍ତୁ କଥାଟା କିପରି ଆରମ୍ଭ କରିବ, ସେ ସ୍ଥିର କରିପାରେ ନାହିଁ । ଏହିପରି କିଛିଦିନ ବିତିଗଲା । ଏହା ଭିତରେ ଗାଈଆଳର ମଧ୍ୟ କୌଣସି ପରିବର୍ତ୍ତନ ହେଲାନାହିଁ । ଦିନେ ରାଜାଝିଅ ଗାଈଆଳକୁ ପଚାରିଲା—''ଆଗରୁ ତୁମେ ବେଶ୍ ଭଲରେ ଥିଲ । ଏବେ ତୁମର କ'ଣ ହୋଇଛି ଯେ ତୁମେ ସବୁବେଳେ ଚିନ୍ତିତ, ବିଷଣ୍ଣ ଓ ବିବ୍ରତ । ସବୁଙ୍କ ଠାରୁ ବହୁତ ଦୂରରେ ରହୁଛ ।''

ଗାଈଆଳ ତାର ମନର କଥା ସବୁ ପ୍ରକାଶିକଲା । ତାପରେ କହିଲା—''ଗାଈମାନଙ୍କୁ ଦେଖିବାକୁ ମୋର ପ୍ରବଳ ଇଚ୍ଛା ।

ସେଥିପାଇଁ ମୁଁ ସେମାନଙ୍କ ପାଖକୁ ଯିବାପାଇଁ ଆଗ୍ରହୀ । କେବଳ ଅନୁମତି ପାଇଲେ ମୁଁ ଯିବ । ଯଦି ତମର ମୋ ସାଙ୍ଗରେ ଯିବାରେ କୌଣସି ଆପତ୍ତି ନ ଥାଏ, ମୁଁ ତମକୁ ସାଥିରେ ନେଇଯିବ !" ରାଜାଝିଅ କହିଲା—"ତୁମକୁ ଛାଡି ମୁଁ କେଉଁଠି ରହିବ ? ବାପା ମା'ଙ୍କଠାରୁ ବିଦାୟ ନେଇ ମୁଁ ତୁମ ସାଥିରେ ଯିବ । ଡେରି କରି ଲାଭ ନାହିଁ । ଶୀଘ୍ର ବାହାରି ଯିବା ।"

ଝିଅଟି ଗଲା । ରାଜାରାଣୀଙ୍କୁ ସବୁକଥା କହି ବିଦାୟ ମାଗିଲା । ରାଜାରାଣୀଙ୍କର ଆପତ୍ତି ନ ଥିଲା । ସେମାନେ ଗୋଟିଏ ବଡ଼ ଧରଣର ବିଦାୟକାଳୀନ ଭୋଜି ଦେଲେ । ସେହି ଭୋଜିରେ ରାଜା ଘୋଷଣା କଲେ—"ମୋ ରାଜ୍ୟରୁ ଅଧେ ଓ ମୋର ଗୃହପାଳିତ ପଶୁ, ହାତୀ, ଘୋଡ଼ା, ଗୋରୁଗାଈ, ଛେଳି, ମେଣ୍ଢା ଓ ଅନ୍ୟାନ୍ୟ ପଶୁମାନଙ୍କ ମଧ୍ୟରୁ ଅଧେ ମୋ ଝିଅର । ସେ ଯେପରି ଚାହିଁବ ଏସବୁ ସମ୍ପତ୍ତିକୁ ନେଇ ବ୍ୟବହାର କରିପାରିବ । ସେ ଯେଉଁଠାରେ ଚାହିଁବ ରହିପାରିବ । ଯଦି ମୋ ପାଖରେ ରହିବାକୁ ଚାହେଁ ମୁଁ ଖୁସୀ ହେବି ।"

ଗାଈଆଳଟି ବନ୍ଧୁ ଓ୍ୱଲଚନ୍ଦ୍ର ସବୁ କଥା ଶ୍ୱଶୁରଙ୍କୁ ନେଇ ତା'ର ଶ୍ୱଶୁରଙ୍କୁ ଜଣେଇ ଦେଲା—"ମୁଁ ଆପଣଙ୍କ ଘରେ ରହିବାକୁ ରାଜି । ଏହାହିଁ ମୋର ଶେଷ ନିଷ୍ପତ୍ତି ।" ତା'ପରେ ସ୍ତ୍ରୀକୁ ସାଥିରେ ଧରି ଗାଈମାନଙ୍କୁ ଦେଖିବା ପାଇଁ ଜଙ୍ଗଲକୁ ବାହାରିଗଲା । ସେମାନେ ଜଙ୍ଗଲରେ ପହଞ୍ଚି ଦେଖିଲେ—ତାର ସବୁ ଗାଈ ମରି ପଡ଼ିଛନ୍ତି । ଏହା ଦେଖି ଗାଈଆଳ ଆଖିରେ ଲୁହ ରହିଲା ନାହିଁ । କୋହ ସମ୍ଭାଳିବା ମଧ୍ୟ ତା ପକ୍ଷରେ ଅସମ୍ଭବ ହୋଇ ଉଠିଲା । ସେ ଭେ ଭେ ହୋଇ କାନ୍ଦିବାକୁ

ଲାଗିଲା । କି ବୁକୁଫଟା ସେ କ୍ରନ୍ଦନ । ସ୍ତ୍ରୀଟି ତାଙ୍କୁ ଆଶ୍ୱାସନା ଦେବାକୁ ଚେଷ୍ଟା କଲା । କିଛି ସମୟ ପରେ ତା'ର ସ୍ୱାଭାବିକ ଅବସ୍ଥା ଫେରି ଆସିବାରୁ ସାପର ବରଦାନ କଥା ତା'ର ମନେ ପଡ଼ିଲା—ସେ ଚାହିଁଲେ ମୃତ ମଧ୍ୟ ଜୀବିତ ହୋଇ ପାରିବ । ସେ ତାହା ପରୀକ୍ଷା କରିବାକୁ ସ୍ଥିର କଲା । ସେ ତାର ସ୍ତ୍ରୀକୁ କହିଲା—"ଏ ମୃତ ଜୀବମାନଙ୍କୁ ମୁଁ ଔଷଧ ଦେବି ।" ତେଣୁ ସେ ଚେର ସଂଗ୍ରହ କରିବାକୁ ବାହାରିଲା । ଅନ୍ଧ ଭାବରେ ଯେଉଁ ଗଛ ପାଇଲା ସେ ଗଛର ଚେର ସଂଗ୍ରହ କରି ଆଣିଲା । ସେ ସବୁ ଚେରକୁ ଗୋଟିକ ପରେ ଗୋଟିଏ ଷାଣ୍ଢଙ୍କ ନାକରେ ଭରି କରି କହିଲା—"ବଞ୍ଚି ଉଠ ।" ଯେଉଁ ଗାଈକୁ ସେ କହେ ତା' ପାଟିରୁ କଥା ସରି ନ ଥାଏ, ସେହି ଷାଣ୍ଢଟି ବୋବାଏ । ଏହିପରି ଭାବରେ ସବୁ ଷାଣ୍ଢ ଜୀବିତ ହୋଇଗଲେ । ସାପ ଦେଇଥିବା ବର ଯେ ଏକାନ୍ତ ସତ୍ୟ, ଏହା ହେଲା ତା'ର ଚାକ୍ଷୁଷ ପ୍ରମାଣ । ସେଥିପାଇଁ ସେ ସାପ ପାଖରେ କୃତଜ୍ଞ । ସେ ଷାଣ୍ଢମାନଙ୍କୁ ଦୁହିଁଲା ଓ ସାପକୁ କୃତଜ୍ଞତା ଜଣାଇବା ପାଇଁ ସେହି ଦୁଧକୁ ଧରି ବାହାରିଲା । ସାଙ୍ଗରେ ଥାଏ ତା'ର ସ୍ତ୍ରୀ । ସେସବୁ ଦୁଧ ନେଇ ସେ ଅଶ୍ୱତ୍ଥ ଗଛ ମୂଳରେ ଢାଳି ଦେଲା । ସାପ ପଦାକୁ ବାହାରି ଆସିଲା । ସେ ତ ଜାଣେ ଯେ ସାପର ତା' ପ୍ରତି କେତେ ଦୟା । ତେଣୁ ତାର ଆଉ ଡରିବାର ପ୍ରଶ୍ନ ଉଠୁନାହିଁ । ସେ ସ୍ତ୍ରୀକୁ କହିଲା—"ସାପକୁ ଡର ନାହିଁ । ବରଂ ସମ୍ମାନ ଦିଅ ।" ତାର ସ୍ତ୍ରୀ ସାପକୁ ମୁଣ୍ଡିଆ ମାରିଲା । ସାପଟି ଖୁସୀ ହୋଇ ତା' ବାଳକୁ ଶୁଙ୍ଘୀ ଦେଲା । ରଜାଝିଅର ବାଳ ମଧ୍ୟ ସୁନା ରଙ୍ଗ ହୋଇ ଝଟକିଲା । ପରଦିନ ସେସବୁ ଷାଣ୍ଢମାନଙ୍କୁ ଧରି ଶ୍ୱଶୁର ଘରକୁ ଆସିଲା । ଶ୍ୱଶୁର ତ ତା'କୁ ତାଙ୍କ ରାଜ୍ୟରୁ ଅଧେ ଦେଇଥିଲେ । ସେ ତା'ର ଦାୟିତ୍ୱ

ଗ୍ରହଣ କଲ । ପ୍ରଜାମାନଙ୍କୁ ପୁଅ ଭଳି ପାଳିଲ । ରାଜ୍ୟରେ ଗଣ୍ଡଗୋଳ ରହିଲ ନାହିଁ । ବେଶ୍ ଆରାମରେ ସମସ୍ତ କଟିଗଲ । ଏହା ଭିତରେ ବହୁ ବର୍ଷ ବିତିଗଲା । ଗାଈଆଳ ଭାବିଲା—ସାପଟି ତାର ବାପ ମା । ତା ଦୟାରୁ ସେ ନବାବ ହୋଇଛି । ଗୋରୁ-ମାନଙ୍କୁ ଫେରି ପାଇଛି । ତେଣୁ ତାକୁ ସନ୍ତୋଷିବା ତାର ଦରକାର । ସେଥିପାଇଁ ସେ ଅଶ୍ୱତ୍ଥ ଗଛ ପାଖକୁ ଗଲା । ସାପକୁ ଡାକିଲା । କିନ୍ତୁ ଉତ୍ତର ମିଳିଲା ନାହିଁ । ସେ ଅଶ୍ୱତ୍ଥ ଗଛକୁ ପଚାରିଲା । ସେ ମଧ୍ୟ କୌଣସି ଉତ୍ତର ଦେଲା ନାହିଁ । ନିରାଶରେ ସେ ଘରକୁ ଫେରିଲା ।



## ହସକୁରା ମାଛ

ଏକଦା ଜଣେ ବଣିକ ଥିଲା । ସେ ତାର ବାଣିଜ୍ୟରେ ଖୁବ୍ ଉନ୍ନତି କରି ଧନୀ ହୋଇଗଲା । ତାର ପାଞ୍ଚପୁଅ । ସମସ୍ତେ ଅବିବାହିତ ।

ବଣିକଟି ଗୋଟିଏ ଗାଁରେ ରହେ । ସେ ଗାଁରେ ଗୋଟିଏ ପୁଷ୍କରିଣୀ ଥିଲା । ସେଇଟା ବହୁଦିନର । କାଳକ୍ରମେ ତାହା ପୋତିହୋଇ ଯାଇଥିଲା । ବଣିକଟି ସେଇ ପୁରୁଣା ପୋଖରୀର ପଙ୍କୋଦ୍ଧାର କରିବା ପାଇଁ ଇଚ୍ଛୁକ । କିନ୍ତୁ ପୋଖରୀଟି ରାଜାଙ୍କର । ତାଙ୍କ ବିନାନୁମତିରେ ପଙ୍କୋଦ୍ଧାର କରିବା ଅସମ୍ଭବ । ତେଣୁ ସେ ରାଜାଙ୍କ ଅନୁଗ୍ରହ ପ୍ରାର୍ଥନା କଲା । ରାଜା

ସମସ୍ତ କଥା ଅବଗତ ହୋଇ ବଣିକକୁ ପଚାରିଲା—"ତୁ ଯଦି ଦୁଇଶି ଟଙ୍କା ଦବୁ, ତେବେ ସେ ପୋଖରୀଟି ଦେଇଦେବ।" ବଣିକ ସମୁଦାୟ ଟଙ୍କା ପଇଠ କରିଦେଲା। ଏବେ ସେ ପୋଖରୀର ମାଲିକ। ସେ ଗାଁକୁ ଫେରି ପରିବାରର ସମସ୍ତଙ୍କୁ ଏକାଠି ବସାଇ କହିଲା—"ମୋ ହାତରେ ଦୁଇଟି କାମ। ଗୋଟିଏ ପୋଖରୀରେ ପଙ୍କୋଦ୍ଧାର। ଅନ୍ୟଟି ମୋ ପୁଅମାନଙ୍କ ବିବାହ। ପଙ୍କୋଦ୍ଧାର ଏକ ଧର୍ମକାର୍ଯ୍ୟ। ତେଣୁ ତାହା ପ୍ରଥମେ କରଣୀୟ। ସେଥିପାଇଁ ପଙ୍କୋଦ୍ଧାର ସରିଗଲେ ପୁଅମାନଙ୍କର ବିବାହ କାର୍ଯ୍ୟ ଆରମ୍ଭ ହେବ।" ପୁଅମାନେ କହିଲେ—"ବାପା ଉଚିତ୍ କଥା କହୁଛନ୍ତି। ବିବାହ କାମ ଟିକେ ଡେରି ହୋଇଗଲେ, ତାହାର କ୍ଷତି ହେବ ନାହିଁ କି ଅସୁବିଧା ହେବ ନାହିଁ। ତେଣୁ ଆଗ ପୋଖରୀ କାମ ହେଉ।" ସେମାନେ ସାଥୀ ସାଥୀ ମଜୁରିଆ ସଂଗ୍ରହ କରି ପୋଖରୀଟି ଶୁଖେଇ ଦେଲେ। ସେଥିରେ ଅଦ୍ଭୁତ ସୁନ୍ଦର ବଡ଼ ବଡ଼ ମାଛ ଥିଲେ। ସେଥିରୁ ଦୁଇଟି ମାଛ ବଣିକ ରାଜାଙ୍କ ପାଖକୁ ଗୋଟିଏ ଲୋକ ହାତରେ ପଠେଇ ଦେଲା। ସେ ଲୋକଟି ରାଜ-ଦରବାରରେ ପହଞ୍ଚି ବଣିକ କଥା କହି ମାଛ ଦୁଇଟି ରାଜାଙ୍କୁ ଭେଟିଦେଲା। ମାଛ ଦୁଇଟି ମୃତ। ତଥାପି ରାଜାଙ୍କୁ ଦେଖି ସେମାନେ ହସିବାକୁ ଲାଗିଲେ। ତାହା ଦେଖି ରାଜା ଅବାକ୍। ଆଶ୍ଚର୍ଯ୍ୟ। ବିସ୍ମିତ। ତାର ଅର୍ଥ ଜାଣିବାକୁ ସେ ପ୍ରବଳ ଆଗ୍ରହୀ। ଉପସ୍ଥିତ ସଭାସଦ୍‌ଙ୍କୁ ମାଛଙ୍କର ଏଇ ହସିବାର କାରଣ କ'ଣ ବୋଲି ପଚାରିଲେ। ସେମାନେ ମାଛଙ୍କର ଏଇ ହସିବାର ତାତ୍ପର୍ଯ୍ୟ ବୁଝିବାକୁ ଅକ୍ଷମ। ସେମାନେ ରାଜାଙ୍କୁ ବୁଝାଇବେ କ'ଣ? ତେଣୁ ସେମାନଙ୍କର ନିରୁତ୍ତର ରହିବା ଛଡ଼ା

ଆଉ ବାଟ ନ ଥିଲା । ସେମାନଙ୍କ ନିରୁତ୍ତରତା ଦେଖି ରାଜା ସେମାନଙ୍କର ଅକ୍ଷମତା ଅନୁଭବ କଲେ । ତେଣୁ ମାଛ ଆଣିଥିବା ଲୋକକୁ ଏହାର କାରଣ ପଚାରିଲେ । ଲୋକଟି କହିଲା—"ମହାରାଜ ! ମୁଁ ମୂଲିଆ ଲୋକ । ବଣିକର ଆଦେଶରେ ମାଛ ଆଣିଛି । ମୋର ବୁଦ୍ଧି ସ୍ୱଳ୍ପ । ଯେଉଁଠି ମହାରାଜାଙ୍କର ଜ୍ଞାନମନ୍ତ୍ରୀମାନେ ଏ ପ୍ରଶ୍ନର ଉତ୍ତର ଦେବାକୁ ଅକ୍ଷମ, ମୋ'ଭଳି ହୀନବୁଦ୍ଧିସମ୍ପନ୍ନ ବ୍ୟକ୍ତି ଏହାର ଉତ୍ତର ଦେବା କ'ଣ ସମ୍ଭବପର ।"

ରାଜା ମାଛବାହକ କଥାରେ ସମ୍ପୂର୍ଣ୍ଣ ସନ୍ତୁଷ୍ଟ । ସେ ତାକୁ କହିଲେ—"ତୁ ଏ ମାଛ ଫେରେଇ ନେଇଯା । ବଣିକକୁ ଦେବୁ । ତାକୁ କହିବୁ—ଏ ପ୍ରଶ୍ନର ଉତ୍ତର ଯଦି ଛ'ମାସ ଭିତରେ ସେ ଦେବାକୁ ଅକ୍ଷମ ହୁଏ, ତାହେଲେ ତାକୁ ସବଂଶେ ହତ୍ୟା କରାଯିବ । ଏହା ମୋର ଆଦେଶ । ବ୍ୟତିକ୍ରମ ଅସମ୍ଭବ ।"

ଲୋକଟି ମାଛ ଫେରେଇ ଆଣି ବଣିକକୁ ଦେଲା । ରାଜାଙ୍କର ଆଦେଶ ବି ଜଣେଇଲା । ବଣିକଟି ରାଜାଙ୍କ ଆଦେଶ ଶୁଣି ସ୍ତମ୍ଭୀଭୂତ । ଦୁଇ ତିନି ଦିନ କାଳ ସେ ଗଭୀର ଚିନ୍ତାମଗ୍ନ ରହି- । ତାପରେ ଭାବିଲା—ପୋଖରୀଟି ଖୋଳେଇ ଦେଲେ ଯୁଗ ଯୁଗ ଧରି ଲୋକେ ତାକୁ ମନେ ରଖିବେ । ବିନାକାରଣରେ ତାକୁ ଓ ତାର ବଂଶକୁ ହତ୍ୟା କରିଥିବାରୁ ରାଜାଙ୍କୁ ଲୋକେ ବି ନିନ୍ଦା କରିବେ । ଏକଥା ଯୁଗ ଯୁଗକୁ ରହିବ । ତେଣୁ ସେ ପୋଖରୀ ଖୋଳା ବନ୍ଦ କଲା ନାହିଁ । ରାଜା ଯେଉଁଦିନ ତାର ଉତ୍ତର ପାଇଁ ରଖିଥିଲେ, ତା ପୂର୍ବରୁ ପୋଖରୀ ଖୋଳା ସରିବାକୁ ସେ ଦୃଢ଼ ପ୍ରତିଜ୍ଞ । ସେଥିପାଇଁ ଜୋର୍‌ରେ ସେ ପୁଣି କାମ ଚାଲୁକଲା ।

ମାଛ ହସିବାର କାରଣ ଜାଣିବା ପାଇଁ ବଣିକଟି ଶତଚେଷ୍ଟା କଲା । ସବୁ ଉଦ୍ୟମ ତା'ର ବ୍ୟର୍ଥ । ନିଷ୍ଫଳ । ଏହା ଭିତରେ ପୋଖରୀ ଖୋଳା ସରିଗଲା । ସେ ତା'ର ପୁଅମାନଙ୍କୁ ଡାକି କହିଲା—"ମାଛ ହସିବାର କାରଣ ନ କହିଲେ, ରାଜା ଆମ ବଂଶକୁ ହତ୍ୟା କରିବେ । ମୁଁ ତମମାନଙ୍କୁ ବିବାହ ଦେଲେ, ଆମ ଘରକୁ ଯେଉଁକନ୍ୟା ବି ଆସିବ ତାକୁ ମଧ୍ୟ ହତ୍ୟା କରାଯିବ । ତେଣୁ ଏ ପରିସ୍ଥିତିରେ ବିବାହ କରିବାର ପ୍ରଶ୍ନ ଉଠୁନାହିଁ । ଏଇନେ ଆମକୁ ବଞ୍ଚାଇ ରଖିବା ହିଁ ହେଉଛି ଆମର ଏକମାତ୍ର କର୍ତ୍ତବ୍ୟ । ସେଥିପାଇଁ ତୁମେ ପିଲାମାନେ ଏଠା ଛାଡ଼ି ପଳାଇ ଯାଅ । ମୁଁ ଏକା ରହୁଛି । ତୁମେ ଏଠୁ ପଳାଇଲେ, ବଞ୍ଚିଯିବ । ତେଣୁ ମୋ ବଂଶଟା ଅନ୍ତତଃ ରହିଯିବ ।"

ସାନ ସ୍ୱରପୁଅ ଯାକ କହିଲେ—"ଆମେ ଏ ପର୍ଯ୍ୟନ୍ତ ଆମର ତତ୍ତ୍ୱ ନେଇ ଜାଣିନାହୁଁ । ଆମେ ଗଲେ, ବିଦେଶରେ କଅଣ କରିବୁ ? ସେ କଥା ମଧ୍ୟ ଜାଣିପାରୁ ନାହୁଁ । ଯଦି ପଳାଇବାର କଥା, ଆସ ସମସ୍ତେ ପଳାଇବା । ଯଦି ତମେ ରହିବ, ଆମେ ବି ରହିବୁ । ଯାହା ଭାଗ୍ୟରେ ଥିବ, ହେଉଗିବୁ ।" ତାପରେ ବଣିକଟି ତାର ବଡ଼ ପୁଅକୁ କହିଲେ—"ଆମ ବଂଶରୁ ତୁ ଏକା ଅନ୍ତତଃ ରହିଗଲେ, ବଂଶ ବୁଡ଼ିବ ନାହିଁ । ସେଥିପାଇଁ ତୁ ପଳା ।"

ବଡ଼ ପୁଅଟି କିଛି ଟଙ୍କା ଧରି ଦୂର ଦେଶକୁ ପଳାଇଗଲା । ବହୁଦିନ ଯାହା ପରେ ସେ ଗୋଟିଏ ରାଜ୍ୟରେ ପହଞ୍ଚିଲା । ସେଠାରେ ସେ ରହିବାକୁ ସ୍ଥିର କଲା । ସେ ଗୋଟିଏ ପୋଖରୀକୁ ଗଲା । ସେଠି ଗାଧୋଇଲା । ସେଇ ପୋଖରୀ କୂଳରେ ସେ ଜଳଖିଆ ଖାଇଲା । ଏତିକିବେଳେ ରାଜକନ୍ୟା ସେଇ ପୋଖରୀ-

କୂଳକୁ ଗାଧୋଇବାକୁ ଆସିଲା । ବଣିକ ପୁଅ ତ ଅପୂର୍ବ ସୁନ୍ଦର । ରାଜାଝିଅ ତାକୁ ଦେଖି ମୁଗ୍‌ଧ । ଉଭୟଙ୍କର ମିଳନ ହେଲା । ତାପରେ ରାଜାଝିଅ ତାର ଦାସୀମାନଙ୍କୁ ପଠାଇ ବଣିକ ପୁଅର ଠିକଣା ଜାଣିବାକୁ ଚାହିଁଲା ।

ଦାସୀମାନଙ୍କଠାରୁ ରାଜାଝିଅର ଉତ୍କଣ୍ଠା ବିଷୟ ଜାଣି ବଣିକଟି କହିଲା "ମୁଁ ଦୂର ବିଦେଶର ଲୋକ । ଏଠି ବସବାସ କରି ରହିବାକୁ ମୁଁ ଆସିଛି ।" ସେ ଦାସୀମାନଙ୍କୁ ଫୁସୁଲେଇଲା । ଶେଷକୁ ତାଙ୍କୁ କହିଲା—"ମୁଁ ରାଜାଝିଅର ମୁହଁ ଦେଖିବାକୁ ଚାହେଁ । ତମମାନଙ୍କୁ ଉଚିତ ପୁରସ୍କାର ଦେବି । ତୁମ୍ଭେମାନେ ଯଦି ତମ ଜେମାଙ୍କ ମୁହଁରୁ ଓଢ଼ଣା କାଢ଼ିଦେବ ।"

ଦାସୀମାନେ ଫେରିଗଲେ । ସବୁକଥା ଜେମାଙ୍କୁ କହିଲେ । ଖାଲି ସେତିକି ନୁହଁ, ରାଜାଝିଅ ମୁହଁ ଦେଖିବାପାଇଁ ସେ ଅତ୍ୟନ୍ତ ଆଗ୍ରହୀ । ଯେ ଓଢ଼ଣା ଖୋଲିଦେବ, ତାକୁ ପୁରସ୍କାର ଦେବ ବୋଲି ସେ ଅଙ୍ଗୀକାର କରିଛି । ଏକଥା ମଧ୍ୟ ସେମାନେ ପ୍ରକାଶ କଲେ ।

ରାଜାଝିଅ କହିଲା —"ତୁମ୍ଭେମାନେ ଯାଅ । ପୁରସ୍କାର ନେଇ ଆସ । ମୁଁ ମୋର ଓଢ଼ଣା ବାହାର କରିଦେବି । ସେ ଅନାୟାସରେ ମୋ ମୁହଁ ଦେଖିପାରିବ । ତାଛଡ଼ା ସେ କଣ ଚାହୁଁଛି, ସେ କଥା ବୁଝି ଆସ ।"

ସେମାନେ ବଣିକ ପୁଅ ପାଖକୁ ଗଲେ । ଏଣେ ରାଜାଝିଅ ତା ମୁହଁରୁ ଓଢ଼ଣା ବାହାର କରିଦେଲା । ବଣିକ ପୁଅଟି ରାଜାଝିଅ ମୁହଁ ଦେଖି ଆନନ୍ଦରେ ଉତ୍‌ଫୁଲ୍ଲ । ଦାସୀମାନଙ୍କୁ ଉପଯୁକ୍ତ ପୁରସ୍କାର ଦେଲା । ସେମାନେ ଯେତେବେଳେ ପଚାରିଲେ— "ତୁମେ କଅଣ ଚାହୁଁଛ", ବଣିକ ପୁଅଟି କହିଲା—"ରାଜଝିଅଙ୍କୁ ବାହାହୋଇ ତା ପାଖରେ ରହିବାକୁ ଚାହେଁ ।

ଡାସୀମାନେ ଫେରିଆସି ରାଜା ଝିଅକୁ ବଣିକ ପୁଅ କଥା କହିଲେ । କିନ୍ତୁ ଏକଥାଶୁଣି ରାଜାଝିଅ ସମ୍ପୂର୍ଣ୍ଣ ନୀରବ । ଗାଧୋଇ ସାରି ସିଧା ସେ ତା ଶୋଇବା ଘରକୁ ଆସିଲା । ଭିତର ପଟୁ କବାଟ ବନ୍ଦ କରି ଶୋଇଗଲା । ଅନ୍ୟମାନଙ୍କ କଥା ତ ଛାଡ଼, ରାଜା ନିଜେ ଡାକିଲେ ବି ଶୁଣିଲା ନାହିଁ । ତାପରେ ରାଜା ତାଙ୍କ ଝିଅର ଡାସୀମାନଙ୍କୁ ଡକେଇଲେ । ଝିଅର ରୁଷିବାର କାରଣ ପଚାରିଲେ । ସେମାନେ କହିଲେ—"ମହାରାଜ ! ଏ ରାଜ୍ୟକୁ ଜଣେ ଅପରିଚିତ ସୌମ୍ୟ ଯୁବକ ଆସିଛନ୍ତି । ରାଜଜେମା ତାଙ୍କୁ ପୋଖରୀ କୂଳରେ ଗାଧୋଇବା ବେଳେ ଦେଖିଲେ । ସେହି ଯୁବକକୁ ବିବାହ କରିବାକୁ ତାଙ୍କର ଭାରି ଇଚ୍ଛା ।" ରାଣୀ ପଚାରିଲେ— "ସେ ଯୁବକ ଏବେ ବି କଣ ପୋଖରୀ କୂଳରେ ଅଛି ?"

ସେମାନେ କହିଲେ—"ଆମେ ଆସିଲା ବେଳେ ସେ ପୋଖରୀ କୂଳରେ ଥିଲା । ଏବେ ଅଛି କି ନାହିଁ କହି ପାରିବୁ ନାହିଁ ।"

ରାଣୀ ଦୁଇଜଣ ଲୋକଙ୍କୁ ଯୁବକଟିକୁ ଧରି ଆଣିବାକୁ ପଠାଇଲେ । ଯଦି ସେ ନ ମିଳେ, କୁଆଡ଼େ ଗଲା, ସେକଥା ବୁଝି ଆସିବାକୁ ମଧ୍ୟ ବରାଦ ଦେଲେ ।

ରାଜାଙ୍କର ଲୋକ ଦି'ଜଣ ପୋଖରୀ କୂଳରେ ଯୁବକଟିକୁ ପାଇଲେ । ସେ କିଏ ଆଉ କଅଣ ସେ କରୁଛି ଏ ବିଷୟରେ ତାକୁ ପଚାରିଲେ । ଯୁବକଟି କହିଲା—"ମୁଁ ସେ ଗୋଟିଏ କାମ ଖୋଜୁଛି । ଯଦି କୌଣସି ଠାରେ କାମଟିଏ ଜୁଟିଯାଏ, ସେ ସେଠି ବିବାହ କରି ରହିଯିବ ।"

ଲୋକ ଦୁଇଟି କହିଲେ—"ଆମେ ତମ ପାଇଁ କାମଟିଏ ଯୋଗାଡ଼ କରିଦେବୁ । ତୁମେ ଆଉ କୁଆଡ଼େ ଯାଅନାହିଁ । ଆମ ସାଥିରେ ଆସ ।

ସେମାନେ ବଣିକ ପୁଅକୁ ତାଙ୍କ ସାଥୀରେ ନେଇ ସହରରେ ଗୋଟିଏ ଘରେ ରଖିଦେଲେ । ତାପରେ ସେମାନେ ରାଜାଙ୍କ ପାଖକୁ ଗଲେ । ସେମାନେ ମିଛରେ କହିଲେ—"ବିଦେଶୀ ତ ଚାଲିଯାଇଛି । ଆମକୁ ତାକୁ ଖୋଜି ବାହାର କରିବାକୁ ହେବ । ସେଥିପାଇଁ ଆମର ବାଟଖର୍ଚ୍ଚ ଦରକାର ।"

ରାଜାଙ୍କଠାରୁ ବାଟଖର୍ଚ୍ଚ ନେଇ ସେମାନେ ଘରକୁ ଚାଲି ଗଲେ । ସେଠି ଖାଇପିଇ ଶୋଇ ଉଠି ସାଥୀର ପୁଅକୁ ଧରି ରାଜାଙ୍କ ପାଖକୁ ଫେରିଲେ । ସେମାନେ ମିଛରେ ରାଜାଙ୍କୁ କହିଲେ—"ଲୋକଟା କିଛିଦୂର ଚାଲିଯାଇଥିଲା । ସେମାନେ ଯାଇ ତାକୁ ଧରି ଆଣିଛନ୍ତି ।"

ରାଜା ବଣିକ ପୁଅ ସାଙ୍ଗରେ କଥାବାର୍ତ୍ତା କଲେ । ତାକୁ ତା ନିଜ ବିଷୟରେ ପଚାରିଲେ । ସେ ସବୁକଥା ରାଜାଙ୍କୁ କହିଲା । କିନ୍ତୁ ତା ଦେଶର ରାଜା ଯେ ତାର ବଂଶକୁ ହତ୍ୟା କରିବେ ବୋଲି ଧମକ ଦେଇଛନ୍ତି, ସେ କଥା ଗୁପ୍ତ ରଖିଲା । ତାର ଅପରୂପ ଚେହେରା । ସେ ମିଷ୍ଟଭାଷୀ । ସେଥିପାଇଁ ସମସ୍ତେ ତା ଉପରେ ସନ୍ତୁଷ୍ଟ । ସେ ଜଣେ ସୁଯୋଗ୍ୟ ପାତ୍ର । ଏଥିରେ କାହାର ସନ୍ଦେହ ରହିଲା ନାହିଁ । ରାଜା ରାଣୀ ତାକୁ ଜ୍ୱାଇଁ କରିବାକୁ ରାଜି । ରାଜା ନୂଆ ଅରି ବିବାହ ପ୍ରସ୍ତୁତି ଚାଲିଲା । ସଙ୍ଗୀତ ଗାୟକମାନଙ୍କୁ ଡକା ହେଲା । ବିବାହ ସାଙ୍ଗେ ସାଙ୍ଗେ ହୋଇଗଲା ।

ବିବାହ ପରେ ବଣିକ ପୁଅଟି ତାର ଭାଇମାନଙ୍କ ଭବିଷ୍ୟତ କଥା ଭାବେ । ସେମାନଙ୍କୁ ଯେ ହତ୍ୟା କରାଯିବ, ଏକଥା ମନକୁ ଆସିଲେ ସେ ବିମର୍ଷ ହୋଇଉଠେ । ରାତି ଅଧରେ ତାର ନିଦ ଭାଙ୍ଗିଯାଏ । ସେ କାନ୍ଦେ । ଲୁହରେ ତାର ବିଛଣା ଭିଜିଯାଏ ।

ରାଜକନ୍ୟା ଏକଥା ଦେଖେ । ବ୍ୟସ୍ତ ହୁଏ । ଉପାୟ ଚିନ୍ତା କରେ । ଦିନେ ରାତିରେ ରାଜକନ୍ୟା ନିଦରେ ଶୋଇ ପଡ଼ିବାର ଛଳନା କଲା । କିନ୍ତୁ ପ୍ରକୃତରେ ଜାଗି ରହିଲା । ସ୍ୱାମୀ ତାର କ'ଣ କରୁଛି, ସେ ଲକ୍ଷ୍ୟ କରୁଥାଏ । ରାତି ଅଧରେ ସ୍ୱାମୀ ତା'ର ଉଠି ପଦାକୁ ଆସିଲା । ସେଠି ହୁଁ ହୁଁ ହୋଇ କାନ୍ଦିଲା । ରାଜା ଝିଅର ତା ପ୍ରତି ସହାନୁଭୂତି ଓ ଦୟା ବଢ଼ୁଥ । ସେ ତା ପାଖକୁ ଆସିଲା । ଘଟଣା କଣ କହିବାକୁ ମିନତି କଲା । ତାକୁ ବିବାହ କରିଥିବାରୁ ସେ କ'ଣ ଦୁଃଖିତ, ସେ କଥା ବି ପଚାରିଲା । ବଣିକ ପୁଅ ଉତ୍ତର ଦେଲା—"ମୁଁ ହତଭାଗ୍ୟ । ବଡ଼ ଦୁଃଖରେ ଅଛି । ହତାଶ ହୋଇ କାନ୍ଦୁଛି । ଦିନରେ ଅନ୍ୟମାନଙ୍କ ଉପସ୍ଥିତି ଯୋଗୁ ଅତିକଷ୍ଟରେ ଲୁହ ମୁଁ ଚାପି ରଖେ । କିନ୍ତୁ ରାତିରେ ମୁଁ ସମ୍ଭାଳି ପାରେନାହିଁ । ତମ ଆଗରେ କାନ୍ଦିବାକୁ ମତେ ଲାଜ ଲାଗେ । ତୁମେ ଶୋଇ ସାରିଲା ପରେ ମୋର ଆବେଗକୁ ମୁଁ ପ୍ରକାଶ କରେ ।"

ରାଜାଝିଅ ପଚାରିଲା—"ତମ ଦୁଃଖର କାରଣ କଅଣ ?" ବଣିକ ପୁଅ କହିଲା—"ଆମ ଦେଶର ରାଜାଙ୍କ ପାଖକୁ ମୋ ବାପା ଦୁଇଟି ମାଛ ଉପହାର ପଠେଇଥିଲେ । ସେମାନେ ମୃତ । ଅଥଚ ରାଜାଙ୍କ ପାଖରେ ସେମାନେ ହସିଲେ । ରାଜା ଏହାର କାରଣ ଜାଣି ପାରିଲେ ନାହିଁ । ତେଣୁ ମୋ ବାପାଙ୍କ ପ୍ରତି ସେ କ୍ରୁଦ୍ଧ । ତାଙ୍କର ଆଦେଶ—ଛ'ମାସ ଭିତରେ ମାଛ ହସିବାର କାରଣ ମୋ ବାପାଙ୍କୁ ଜଣାଇବାକୁ ହେବ । ନଚେତ୍ ମୋର ବାପା, ମାଆ, ଭାଇ ଓ ଭଉଣୀ ସମସ୍ତଙ୍କୁ ମାରିଦିଆଯିବ । ଏଇ ଧମକ ଯୋଗୁଁ ଘରଭିତରୁ ଅନ୍ତତଃ ଜଣେ ବାହାରିଯାଉ ଭାବି ମୋ ବାପା ମତେ ପଠେଇ ଦେଇଛନ୍ତି । ଏଠାରେ ମୁଁ ନିରୁପାୟ ।

କିନ୍ତୁ ସେମାନଙ୍କ ଭବିଷ୍ୟତ କଥା ମନେ ପଡ଼ିଲେ ମୋତେ କାନ୍ଦ ମାଡ଼େ ।”

ରାଜକୁମାରୀ ପଚାରିଲେ—“ଏହି ରହସ୍ୟ ଉଦ୍‌ଘାଟିତ ପାଇଁ କେଉଁ ଦିନଟି ସ୍ଥିର ହୋଇଛି ?” ଯୁବକଟି କହିଲେ—“ଆର ମାସ ପୂର୍ଣ୍ଣିମୀ ଦିନ ।” ତାପରେ ରାଜକନ୍ୟା କହିଲେ—“ମୋତେ ତମ ବାପାଙ୍କ ପାଖକୁ ନେଇଯାଅ । ମୁଁ ମାଛମାନେ କାହିଁକି ହସିଲେ, ବୁଝାଇ ଦେବି ।”

ଏକଥା ଶୁଣି ବଣିକ ପୁଅର ଆନନ୍ଦର ସୀମା ନଥିଲା । ପର ଦିନ ସକାଳେ ସେମାନେ ରାଜାଙ୍କୁ ଭେଟିଲେ । ସେମାନେ କାହିଁକି ଯିବ କୁ ବାହୁଡ଼ି ଛନ୍ତି, ସେକଥା ତାଙ୍କୁ ଜଣାଇଲେ । ରାଜା ତାଙ୍କ ଝିଅକୁ କହିଲେ—“ଯା ମା’ ଜମା ଡରିବୁ ନାହିଁ । ନିଜ ଉପରେ ଆସ୍ଥା ରଖିବୁ । ମୋର ବିଶ୍ୱାସ ମାଛମାନେ କାହିଁକି ହସିଲେ, ତାହାର କାରଣ ତୁ କେବଳ ସେ ଦେଶର ରାଜାଙ୍କୁ ବୁଝାଇ ପାରିବୁ ।”

ତାପରେ ସେମାନେ ପ୍ରସ୍ତୁତ ହୋଇ ବଣିକର ଘର ଅଭିମୁଖେ ବାହାରିଲେ । ସେମାନେ ପହଞ୍ଚି ବଣିକକୁ କହିଲେ—“ତୁମେ ରାଜାଙ୍କ ପାଖକୁ ଯାଅ । ତାଙ୍କୁ କହିବ—ମାଛମାନେ କାହିଁକି ହସିଲେ, ସେ କଥା ତୁମେ ପ୍ରକାଶ କରିବାକୁ ରାଜି । ଏଥିପାଇଁ ଗୋଟିଏ ସଭା ହେଉ । ଯେ ଜାଗାକୁ ସହରବାସୀଙ୍କୁ ଡକାଯାଉ ।”

ରାଜାଙ୍କର ବଣିକ ପ୍ରସ୍ତାବରେ ଆପତ୍ତି ନଥିଲା । ସେ ତ ନିଜେ ପ୍ରକୃତ ଘଟଣା କଣ ଜାଣିବାକୁ ଆଗ୍ରହୀ । ସେଥିପାଇଁ ସେ ସଭାଟିଏ ଡାକିଲେ । ସେଦିନ ସାରା ସହରବାସୀ ରୁଣ୍ଡ ହେବା ପାଇଁ

ଆଦେଶ ଦେଲେ । ରାଜକୁମାରୀ ପୁରୁଷ ବେଶରେ ସେ ସଭାରେ ଉପସ୍ଥିତ ହେଲା । ବଣିକଟି ପୁରୁଷ ବେଶଧାରୀ ରାଜକୁମାରୀ ଏ ସମସ୍ୟାର ସମାଧାନ କରି ପାରିବେ ବୋଲି ରାଜାଙ୍କୁ ଜଣାଇଲେ ।

ମାଛ କାହିଁକି ହସିଲେ, ବୁଝାଇବା ପାଇଁ ରାଜା ତାଙ୍କୁ ଆହ୍ୱାନ କଲେ । ରାଜକୁମାରୀ କହିଲା—"ମହାରାଜ, ଯଦି ପ୍ରକୃତ କାରଣ ଆପଣ ଜାଣିବାକୁ ଚାହାନ୍ତି, ତେବେ ସବୁ ରାଣୀମାନଙ୍କୁ ଏଠାରେ ଉପସ୍ଥିତ ହେବାପାଇଁ ଆଦେଶ ଦେବା ହଉନ୍ତୁ ।"

ରାଜାଙ୍କ ଆଦେଶରେ ରାଣୀମାନେ ସଭାସ୍ଥଳରେ ଉପସ୍ଥିତ ହେଲେ । ତାପରେ ରାଜକୁମାରୀ କହିଲେ—"ମହାରାଜ, ଆପଣଙ୍କ ରାଣୀ ମଧ୍ୟରୁ ପାଞ୍ଚରାଣୀ କେବଳ ସ୍ତ୍ରୀଲୋକ । ଅନ୍ୟମାନେ ପୁରୁଷ । ଏହା ଯଦି ସତ୍ୟ ବୋଲି ପ୍ରମାଣିତ ହୁଏ, ହଜୁର୍ ମୋତେ କଅଣ ପୁରସ୍କାର ଦେବେ ? ଯଦି ଏହା ମିଥ୍ୟାହୁଏ, ପ୍ରାଣଦଣ୍ଡ ତ ମିଳିବା ପାଇଁ ଆଦେଶ ଅଛି । ମୋର ଏହି ଆଦେଶର ପରିବର୍ତ୍ତନ ପାଇଁ ପ୍ରାର୍ଥନା କରୁ ନାହିଁ ।"

ରାଜା ଗୋଟିଏ ଚୁକ୍ତିପତ୍ର ଲେଖିଦେଲେ । ଯଦି ବଣିକର କଥା ସତ୍ୟ ହୁଏ, ସେ ତାଙ୍କ ରାଜ୍ୟରୁ ଅଧେ ନେବ ।

ପରୀକ୍ଷା ପାଇଁ ବ୍ୟବସ୍ଥା ହେଲା । ଛ'ରାଣୀ ଯେ ପୁରୁଷ, ଏହା ପ୍ରମାଣିତ ହେଲା । ରାଜା ଏଥିପାଇଁ ତାଙ୍କ ପ୍ରଜାମାନଙ୍କ ଆଗରେ ଲଜ୍ଜିତ ହେଲେ । ସମାବେଶ ଭାଙ୍ଗିଲା । ବଣିକ ଅଧେ ରାଜ୍ୟ ପାଇଲା ।



# କର ଓ ଗୁଜା

କର ଓ ଗୁଜା ଦୁଇ ଭାଇ । ସେମାନେ ଉଭୟେ ଧନୁ-ର୍ବିଦ୍ୟାରେ ପ୍ରବୀଣ । ନିପୁଣ । ବିଚକ୍ଷଣ । ଲକ୍ଷ୍ୟ ସେମାନଙ୍କର ଅବ୍ୟର୍ଥ । ତାଙ୍କ ସମକକ୍ଷ ଧନୁର୍ଦ୍ଧର ଆଉ ସେହି ରାଜ୍ୟ କିଅଣ ଆଖପାଖ ରାଜ୍ୟରେ ବି କେହି ନଥିଲେ । ସେହି ରାଜ୍ୟରେ ଦୁଇଟି ଚିଲ ଥିଲେ । ଗୋଟିଏ ଗଛରେ ସେମାନଙ୍କର ବସା । ସେମାନେ ମଣିଷ ପିଲାଙ୍କୁ ତାଙ୍କ ବସାକୁ ଟେକି ନଅନ୍ତି । ସେଠି ସେମାନେ ଓ ତାଙ୍କର ପିଲାମାନେ ସେହି ମଣିଷ ପିଲାର ମାଂସକୁ ଖାଆନ୍ତି । ଏଇଟା ସେମାନଙ୍କର ଅଭ୍ୟାସ । ତେଣୁ ରାଜ୍ୟରୁ ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କ ସଂଖ୍ୟା କ୍ରମେ ହ୍ରାସ ପାଇବାକୁ ଲାଗିଲା । ଲୋକମାନେ ଚିଲ ଦୁଇଟିକୁ ମାରିବା ପାଇଁ ବହୁ ଚେଷ୍ଟା କଲେ । ସବୁ ଉଦ୍ୟମ ବ୍ୟର୍ଥ ହେଲା । ଶେଷକୁ ସେମାନେ ଏକଜୁଟ ହୋଇ ରାଜାଙ୍କ ପାଖକୁ ଗଲେ । ସେମାନେ ଚିଲଙ୍କର ଅତ୍ୟାଚାର ବିଷୟରେ ରାଜାଙ୍କୁ ଗୁହାରି କଲେ । ତା' ଛଡ଼ା ସେମାନେ ଜଣାଇ ଦେଲେ ଯେ, ଚିଲ ଦୁଇଟିକୁ ମାରିବାର ଯଦି ବ୍ୟବସ୍ଥା ନ ହୁଏ, ତାହା ହେଲେ ସେମାନେ ଏ ରାଜ୍ୟ ଛାଡ଼ି ଚାଲିଯିବେ ।

ରାଜା ପ୍ରଜାମାନଙ୍କ ଦୁଃଖ ଶୁଣି ମ୍ରିୟମାଣ । ବ୍ୟଥିତ । ସାଥି ସାଥି ରାଜାଦେଶ ଘୋଷଣା କରାଗଲା—"ଯେଉଁ ଲୋକ ଚିଲ ଦୁଇଟିକୁ ମାରି ପାରିବ, ଯଥେଷ୍ଟ କୃଷ ଜମି ତାକୁ ଉପହାର ଦିଆଯିବ ।"

ଏ ଘୋଷଣା ଶୁଣି ରାଜ୍ୟସାରାର ବାଣୁଆ ଚିଲ ଶିକାରରେ ବାହାରିଲେ । ଚିଲ ଦୁଇଟିର ବସା ଜଳ ଓ ଘୋରଣାର ଚଳରେ ଉଆର । ତାହା ଦୁର୍ଭେଦ୍ୟ ଖର ଓ ଦ୍ୟତିକ୍ରମ ଭୂମି । ତାଛଡ଼ା ଚିଲ ଦୁଇଟି ଅତ୍ୟନ୍ତ ଧୂର୍ତ୍ତ । ସେମାନେ ବାଣୁଆଙ୍କ ଅକଲ ଗୁଡ଼ୁମ କରିଦେଲେ । ସବୁ ବାଣୁଆଙ୍କର ଉଦ୍ୟମ ନିଷ୍ଫଳ, ବ୍ୟର୍ଥ । ଏହା ସେମାନଙ୍କର ଅପାରଗତାର ପ୍ରମାଣ । ଆପେ ଆପେ ସେମାନେ ଚିଲମାନଙ୍କୁ ମାରିବାର ଉଦ୍ୟମରୁ ନିବୃତ୍ତ ରହିଲେ । ଏକଥା ରାଜ୍ୟରେ ସମସ୍ତେ ଜାଣିଗଲେ ।

ଏହାଦେଖି କରଗୁଜା ଚିଲଙ୍କୁ ମାରିବାକୁ ବାହାରିଲେ । ସେମାନେ ଦେଖିଲେ – ଅପ୍ରତ୍ୟାଶିତ ଆକ୍ରମଣ ଦ୍ୱାରା କେବଳ ଚିଲଙ୍କୁ ମାରିହେବ । ଚିଲମାନେ ପ୍ରତିଦିନ ସେମାନଙ୍କ ପିଲାଙ୍କପାଇଁ ଖାଦ୍ୟ ନେଇ ଏକ ନିର୍ଦ୍ଦିଷ୍ଟ ସମୟରେ ବସାକୁ ଆସନ୍ତି । ଅଳ୍ପ ସମୟ ପରେ ସେମାନେ ଗୁଳଯାଆନ୍ତି । ତାଙ୍କର ବସାରେ ରହିବା ସମୟ ହେଉଛି ତାଙ୍କୁ ମାରିବାର ପ୍ରକୃଷ୍ଟ ସମୟ । ଏହା ଥିଲା ସେମାନଙ୍କର ସୁଚିନ୍ତିତ ନିଷ୍ପତ୍ତି । ଏହାକୁ କାର୍ଯ୍ୟକାରୀ କରିବାକୁ ସେମାନେ ଚିଲ ବସା ପାଖକୁ ଗଲେ । ଚିଲମାନଙ୍କର ଦୃଷ୍ଟି ଏଡ଼ାଇବା ପାଇଁ ସେମାନେ ଗଛ ଆଡ଼ୁଆଳରେ ବସି ରହିଲେ । ଚିଲମାନେ ପିଲାମାନଙ୍କ ପାଇଁ ଖାଦ୍ୟ ଧରି ଆସି ସିଧା ବସାରେ ପଶିଲେ । ଘୋଇଣାରେ ତ କଣା ଥାଏ । କରଗୁଜ ସେହି କଣାକୁ ଲକ୍ଷ୍ୟକରି ଶର ମାରିବେ । ସେମାନଙ୍କ ଲକ୍ଷ୍ୟ ତ ଅବ୍ୟର୍ଥ । ତେଣୁ ତାଙ୍କ ଶର ସେଇ କଣାଦେଇ ବସାରେ ବସିଥିବା ଚିଲମାନଙ୍କୁ ବିଦ୍ଧକଲା । ଚିଲ ଦୁଇଟା ସିଧା ଆସି ତଳେ ପଡ଼ିଲେ । ଯେଉଁଠି ସେମାନେ ପଡ଼ିଲେ, ସେଠା ମାଟି

ଦବଗଲା । ଏହା ଜଙ୍ଗା ଯମୁନାର ଉତ୍ପତ୍ତି ସ୍ଥଳ । ମୃତ ଚଢ଼େଇ ଦୁଇଟିକୁ ଧରି କର ଗୁଜା ରାଜାଙ୍କ ପାଖକୁ ଗଲେ । ମୃତ ଚଢ଼େଇ ଦେଖି ରାଜା ମହାଆନନ୍ଦ । ତାଙ୍କୁ ଯଥେଷ୍ଟ ଜମି ପୁରସ୍କାର ଦେଲେ । କର ଓ ଗୁଜା ଚଢ଼େଇ ମାରିଥିବାରୁ ରାଜ୍ୟର ଲୋକେ ତାଙ୍କଠାରେ କୃତଜ୍ଞ । ଚଢ଼େଇ ଯେଉଁ ଜମିତକ ଦବ ଯାଇଥିଲା, ସେମାନେ ମିଶି ତାକୁ ଗୋଟିଏ କ୍ଷେତରେ ପରିଣତ କରିଦେଲେ । ସେମାନେ ଖୁସିରେ କର ଗୁଜାଙ୍କୁ ସେଇ ଜମିଟି ଉତ୍ସର୍ଗ କଲେ । ତାହା ଥିଲା ସେମାନଙ୍କର କୃତଜ୍ଞତାର ନିଦର୍ଶନ ।

କର ଓ ଗୁଜା ତ ଅବିବାହିତ । ଜଙ୍ଗଲରେ ବୁଲିବାରେ ତାଙ୍କର ଆନନ୍ଦ । ସେଥିପାଇଁ ସେମାନେ ଅଧିକାଂଶ ସମୟ ଜଙ୍ଗଲରେ କଟାଉଥାଆନ୍ତି । ଜଙ୍ଗଲରୁ ଯାହାକିଛି ଫଳମୂଳ ସଂଗ୍ରହ କରନ୍ତି, ତାକୁ ଖାଉଥାଆନ୍ତି । ଗୁମ୍ଫା ତାଙ୍କର ରହିବା ଆଶ୍ରୟସ୍ଥଳ । ସେଥିପାଇଁ ସନ୍ଧ୍ୟାବେଳେ ସେଠି ସେ ରାତ ରହନ୍ତି । ଜଙ୍ଗଲରୁ ସଂଗ୍ରହ କରିଥିବା ଚେର ସବୁ ପୋଡ଼ନ୍ତି । ତାହାହିଁ ତାଙ୍କର ରାତିର ଖାଦ୍ୟ । ଦିନେ ସେମାନେ ରାତିରେ ଚେର ପୋଡ଼ୁଥିବା ବେଳେ ବାଘଟିଏ ଲୁଚି ଲୁଚି ଗୁମ୍ଫା ଦୁଆର ମୁହଁକୁ ଆସିଲା । ସେଠି ବସି କହିଲା—“ତୁମେ ଯାହା ରାନ୍ଧୁଚ, ମୋତେ ଖାଇବାକୁ ଦିଅ । ନଇଲେ ମୁଁ ତମକୁ ଖାଇଦେବି ।” ସେମାନେ ବାଘ କଥାରେ ଅବିଚଳିତ । ସେମାନେ ପୋଡ଼ୁଥିବା ଚେରସବୁ ଖାଇବାକୁ ଲାଗିଲେ ।

ମଝିରେ ମଝିରେ କେତେବେଳେ ଚୁଲିରୁ ଜଳନ୍ତା ଅଙ୍ଗାର ତ ଆଉ କେତେବେଳେ ପୋଡ଼ାଚେର ଖଣ୍ଡେ ଖଣ୍ଡେ ବାଘ ଆଡ଼କୁ ପକାଇ ଦେଉଥିଲେ । ବାଘ ସେସବୁ ଗୋଟାଏ । ଖାଏ ।

ବାଘର ଲୋଭ ବଢ଼ିଲା । ସେ ଭାବିଲା—ସେମାନେ ଖାଇ ସାରିଲେ ଭଲ ଜନିଷ ନିଶ୍ଚୟ ତାକୁ ଖାଇବାକୁ ଦେବେ । ତେଣୁ ସେ ସେଠା ଆଉ ଘୁଞ୍ଚିଲା ନାହିଁ ।

ଦୁଇ ଭାଇଙ୍କର ଚିନ୍ତା—ବାଘଟି ଏଠି ରହିଲେ ମହାବିପଦ । ସେମାନେ ନିରାପଦରେ ଶୋଇବାର ପ୍ରଶ୍ନ ଉଠୁନାହିଁ । ତାକୁ କିପରି ତଡ଼ା କରିବେ, ସେଇ ଚିନ୍ତାରେ ସେମାନେ ବ୍ୟସ୍ତ ହେଲେ । ସେମାନେ ଏ ବିଷୟରେ ବହୁ ଆଲୋଚନା କଲେ । ଶେଷରେ ସେମାନଙ୍କର ନିଷ୍ପତ୍ତି ଅନୁସାରେ ଗୁଜା ଡଠାରୁ ବାଘ ଉପରକୁ ଲମ୍ଫ ଦେଇ ତା'ର ଲାଙ୍ଗୁଡ଼ଟି ଧରି ପକାଇଲା । ତାକୁ ଘୁରାଇବାକୁ ଲାଗିଲା । ବାଘଟି ଘୁରିବା ସମୟରେ ତାର ଲାଙ୍ଗୁଡ଼ଟି ଛିଣ୍ଡିଗଲା । ବାଘଟି ଛିଟିକି ଯାଇ କିଛି ଦୂରରେ ପଡ଼ିଲା । ବାଘଟି ପ୍ରାଣଭୟରେ ସେଠୁ ଉଠି ଜଙ୍ଗଲକୁ ଧାଇଁଲା । କର ଓ ଗୁଜା ବାଘର ଛିଣ୍ଡା ଲାଙ୍ଗୁଡ଼ଟି ଆଣିଲେ । ତାକୁ ପୋଡ଼ି ଖାଇଲେ । ଏହା ତାଙ୍କୁ ଭାରି ଭଲ ଲାଗିଲା । ତେଣୁ ବାଘକୁ ଶିକାର କରି ତା' ଦେହର ଅବଶିଷ୍ଟାଂଶ ଖାଇବାକୁ ସେମାନେ ଏଥର ଆଗ୍ରହୀ । ପର ଦିନ ସକାଳୁ ସେମାନେ ବାଘକୁ ଖୋଜି ବୁଲିଲେ । ତେଣୁ ସେଇ ବାଘ ସାଥିରେ ତାଙ୍କର ଭେଟ ହେଲା । ବାଘ ସେମାନଙ୍କୁ ଦେଖି ଭୁଲିଆ । ପଳାଇବାକୁ ବସିଲା । ସେମାନେ ତାର ପିଛା ଧରିଲେ । ଶେଷକୁ ତାକୁ ଧରି ମାରିଲେ । ନିଆଁ ଲଗାଇ ତାର ରୁମ ସବୁ ପୋଡ଼ି ସଫାକଲେ । ତାର ମାଂସକୁ କବାବ କରି ଖାଇଲେ । ବାକି ରହିଲା ବାଘର ପେଟ । ଏହାକୁ ସାଥିରେ ନେଇଯିବା । ଭୋକ ହେଲେ ଖାଇବା । ଏହି କଥା କର କହିଲା । ତା କଥାରେ ଗୁଜା ଅରାଜି । କର ତା ନିଜ କଥା ରଖିବା ପାଇଁ କାନ୍ଧରେ ବାଘ ପେଟକୁ ପକାଇ ଗୁଜ ସାଥିରେ ବାହାରିଲା । ଯାଉ ଯାଉ

ବାଟରେ ଗୋଟିଏ ବଡ଼ ଗଛ ପଡ଼ିଲା, ସେମାନେ ଯାଇ ତା'ର ଛାଇରେ ବସିଲେ । ଏହିସମୟରେ ଗୋଟିଏ ରଜାଙ୍କର ବାଘଘର ପଳିଆ ସେହି ବାଟରେ ଆସିଲା । ସେମାନଙ୍କୁ ଦେଖି ଭର ଓ ରଜା ଗଛ ଉପରକୁ ଉଠିଗଲେ । ବାଘର ପେଟଟିକୁ ଭର ସେ ଗଛ ଉପରକୁ ନେଇଗଲା ।

ବରଯାତ୍ରୀମାନେ ସେ ଗଛ ତଳେ ବିଶ୍ରାମ ନେବା ପାଇଁ ଅଟକିଲେ । କିଛି ଲୋକ ଖାଇବାର ବ୍ୟବସ୍ଥା କରି ଭୋଜନରେ ବସିଗଲେ । ରଜା ସାଇଙ୍କିରୁ ଓହ୍ଲାଇଲେ । ଗଛତଳେ ବିଛଣା ହେଲା । ସେ ସେଠି ଶୋଇଗଲେ । ଅନ୍ୟମାନେ ଯେ ଯେଉଁଠି ପାଇଲା ନିଜକୁ ଲମ୍ବ କରିଦେଲା । ଭର ଗଛ ଉପରେ ବସି ବାଘ ପେଟଟିକୁ ଧରିଥାଏ । ତାର ହାତ ଝୋଲହେଲା । ବାଘ ପେଟକୁ ଧରି ରଖିବା ତା' ପକ୍ଷରେ ଆଉ ସମ୍ଭବପର ହେଲାନାହିଁ । ସେ ଗୁଜକୁ କହିଲା—"ମୋ ପକ୍ଷରେ ଏ ବାଘ ପେଟକୁ ଧରି ରଖିବା ଅସମ୍ଭବ ହେଲାଣି । ତୁ ଟିକିଏ ଧର । ଗୁଜ ତା କଥା ଶୁଣିଲା ନାହିଁ । ବରଂ ବାଘ ପେଟ ଧରିବାକୁ ସିଧା ମନା କରିଦେଲା ।

ଭର ପକ୍ଷରେ ବାଘ ପେଟକୁ ଧରିବା ଆଉ ସମ୍ଭବପର ନୁହେଁ । ହାତ ତାର ଅବଶ ହୋଇ ଆସିଲା । ତା ହାତରୁ ବାଘ ପେଟଟି ଆପେ ଆପେ ଖସି ପଡ଼ିଲା । ସିଧା ଯାଇ ତାହା ରଜାଙ୍କ ଉପରେ ପଡ଼ିଲା । ସେ ଶବ୍ଦ ଶୁଣି ପାଖରେ ଶୋଇଥିବା ଲୋକେ ଉଠି ବାଘର ପେଟ ଦେଖି ହାଲ୍ଲା କଲେ—ରଜାଙ୍କର ପେଟ ଫାଟିଗଲା । ସେ ହାଲ୍ଲା ଶୁଣି ସମସ୍ତେ ଉଠିଗଲେ । କ'ଣ ପ୍ରକୃତ ଘଟଣା ଜାଣିବାକୁ କେହି ଚେଷ୍ଟା ବି କଲେ ନାହିଁ । ସେଠୁ ସମସ୍ତେ ଭୟରେ ପଳାଇଗଲେ । କିଛି ବାଟ ଗଲା ପରେ ସେମାନେ ପ୍ରକୃତସ୍ଥ ହେଲେ । ସେଠି ବସି ବୁଝିଲେ—

ସେମାନେ ଆଣିଥିବା ଜନିଷ ଗୁଡ଼ିକରେ, ଆଗରୁ ସେମାନଙ୍କର ଯାହା ଏକାନ୍ତ ଅସମ୍ଭବ । ତେଣୁ ସେଠାରୁ ପୁଣି ଫେରି ଜନିଷ ନେବାକୁ ସେମାନେ ସ୍ଥିର କଲେ । ତେଣୁ ସେମାନେ ଫେରିଲେ ।

ଏହା ଭିତରେ ଲୋକମାନେ ପଳାଇଯିବାରୁ କର ଓ ଗୁଜା ଗଛରୁ ଓହ୍ଲାଇଲେ । ମୂଲ୍ୟବାନ ଜନିଷ, ପୋଷାକପତ୍ର ଓ ଅନ୍ୟାନ୍ୟ ଦରକାରୀ ଜନିଷ ସଂଗ୍ରହ କରି ଗଛ ଉପରକୁ ଉଠିଗଲେ । ଯାଉଥିଲେ କର ଗୋଟିଏ ବଡ଼ ଢୋଲ ଗଛ ଉପରକୁ ନେଇଗଲା । ତାର ଗୋଟିଏ ପଟରେ ଅସଂଖ୍ୟ କଣା ଥିଲା । ସେଇ ଗଛରେ ଗୋଟିଏ ବଣୁଆ ମହୁମାଛିଙ୍କର ଭସାଟିଏ ଥିଲା । ସେଇ ମହୁମାଛିଙ୍କୁ ସଂଗ୍ରହ କରି ଗୋଟି ଗୋଟି କରି ସେ ସବୁଙ୍କୁ ସେ କଣାବାଟେ ଢୋଲରେ ପୂରାଇଲା ।

ରାଜାଙ୍କର ଲୋକ ଫେରିଆସି ଦେଖିଲେ ଯେ ତାଙ୍କର ମୂଲ୍ୟବାନ ଜନିଷ ସବୁ ନାହିଁ । କିଏ ନେଇଯାଇଛି । ତାହା ଜାଣିବା ପାଇଁ ସେମାନେ ଚାରିଆଡ଼େ ଖୋଜିଲେ । କର ଓ ଗୁଜା ଗଛରେ ବସିଥିବାର ଦେଖି ତାଙ୍କୁ ଜନିଷ ସବୁ ଫେରାଇ ଦେବାକୁ କହିଲେ । କର ଗୁଜା ଶୁଣି ନ ଶୁଣିଲା ପରି ବସି ରହିଲେ । ରାଜାଙ୍କ ଲୋକ ତାଙ୍କୁ ଧମକ ଦେଇ କହିଲେ— "ଜନିଷ ଯଦି ନ ଫେରାଇବ ତାହାହେଲେ ଆମେ ତମକୁ ଗୁଳିକରି ହତ୍ୟା କରିବୁ ।"

କର ଓ ଗୁଜା କହିଲେ—"ଦେଖା, କିଏ କାହାକୁ ହତ୍ୟା କରୁଛି ।"

ରାଜାଙ୍କ ଲୋକ ରାଗି କରି ଗୁଜାଙ୍କୁ ଲକ୍ଷ୍ୟକରି ବନ୍ଧୁକରୁ ଗୁଳି ଫୁଟାଇଲେ । କୌଣସିଟି ଗୁଳି ତାଙ୍କ ଦେହରେ ବାଜିଲା ନାହିଁ । ବରଂ ସବୁ ଗୁଳି ସରିଗଲା । ସେମାନେ ଏଥର

ଅସହାୟ । ତାଙ୍କ ଅବସ୍ଥା ଦେଖି ଜର ଗୁଜା କହିଲେ—"ତମ କଥା ତ ସରିଗଲା, ଏଥର ଆମ ପାଳି ।" ଜର ଏଥର ଢୋଲର ଯେଉଁ ପଟେ କଣା ନଥିଲା, ସେପଟକୁ ବାଡେଇ କହିଲା—"ଆମର ପ୍ରିୟ ବଣୁଆ ମହୁମାଛି, ରଜାଙ୍କ ଲୋକଙ୍କ ପାଖକୁ ଯାଅ । ତାଙ୍କୁ ମାର ।"

ଅସଂଖ୍ୟ ବଣୁଆ ମହୁମାଛି ଢୋଲରୁ ବାହାରି ରଜାଙ୍କ ଲୋକମାନଙ୍କ ପାଖକୁ ଉଡ଼ି ଗଲେ । ତାଙ୍କୁ ଦେଖି କେତେ ଲୋକ ପଳାଇଲେ । ଯେ ରହିଲେ, ତାଙ୍କୁ ସେମାନେ ଗୋଡ଼େଇ ଗୋଡ଼େଇ କାଟି ମାରିଲେ । ଲୋକମାନେ ଗାଁବନ ଜଙ୍ଗଲରେ ପଳାଇଲେ ।

ଗଛରୁ ଓହ୍ଲାଇ ଯାହା ଆଉସବୁ ଜିନିଷ ପଡ଼ିଥିଲା, ତାକୁ ଧରି ଜର ଗୁଜା ଘରକୁ ଗଲେ । ଆଗରୁ ତ ତାଙ୍କର ରଜାଦତ୍ତ କୃଷିଜମି ଓ ଲୋକଦତ୍ତ କୃଷିକ୍ଷେତ ଥିଲା । ସେ ସବୁକୁ ନେଇ ସେମାନେ ବେଶ୍ ଭଲରେ ରହିଲେ । ଲୋକେ ତାଙ୍କୁ ରଜାର ସମ୍ମାନ ଦେଲେ ।



# ଟିପା ଓ ଟିପି

ଟିପା ଟିପି ଏକାଠି ରହନ୍ତି । ପୋଡ଼ପିଠା ସେମାନଙ୍କର ପ୍ରିୟ ଖାଦ୍ୟ । ଦିନେ ଜଙ୍ଗଲରେ ସେମାନେ ଯାଉ ଯାଉ ଗୋଟିଏ ଭାଲୁ ହାବୁଡ଼ରେ ପଡ଼ିଲେ । ଭାଲୁଟି ତାଙ୍କୁ ଦେଖି ଗର୍ଜନ କରି କହିଲା –"ତମକୁ ମୁଁ ଖାଇବି ।" ଟିପା ଟିପି ଭାଲୁକୁ କହିଲେ— "ଆମକୁ ଛାଡ଼ିଦିଅ । କାଲି ଆମେ ଯାହା ମାଗି କରି ଆଣିବୁ । ତମ ପାଇଁ ପୋଡ଼ ପିଠାଟିଏ କରିବୁ ।"

ପୋଢ଼ପିଠା ଲୋଭରେ ଭାଲୁଟି ତାଙ୍କୁ ଛାଡ଼ିଦେଲା । ସେମାନେ ମାଗିକରି ଆଣି ପିଠା କରି ଖାଇଲେ । ଭାଲୁ ପାଇଁ କିଛି ରହିଲା ନାହିଁ । ଗୋଟିଏ ଶୁଖିଲା ଲାଉ ଥିଲା । ଭିତର ତା'ର ଫମ୍ପା । ସେମାନେ ଭାଲୁର ଭୟରେ ତା ଭିତରେ ଲୁଚିଲେ । ଭାଲୁ ଆସି ସେମାନଙ୍କୁ ଖୋଜି ଫେରିଗଲା । ପରଦିନ ଟିପା ଟିପି ମାଗି ଯିବା ବାଟରେ ଭାଗ୍ୟକୁ ଭାଲୁ ହାବୁଡ଼ରେ ପଡ଼ିଲେ । ଭାଲୁଟି ତାଙ୍କୁ ଦେଖି କହିଲା—"ଏଥର ତମକୁ ଖାଇବି ।"

ସେମାନେ କହିଲେ—"ଏଥର ଆମକୁ ଛାଡ଼ିଦିଅ । ଆଜି ଆମେ କେବଳ ତମ ପାଇଁ ମାଗିବୁ ।"

ଭାଲୁଟିର ଲୋଭ ବଢ଼ିଲା । ଟିପାଟିପି କଥାରେ ଭୁଲି ତାଙ୍କୁ ଛାଡ଼ିଦେଲା । ସେମାନେ ମାଗିକରି ଆଣି ତାକୁ ସବୁ ଖାଇଦେଲେ । ଆତ୍ମରକ୍ଷା କରିବାକୁ ହେବ । ସେଥିପାଇଁ ଲାଉଭିତରେ ଲୁଚିଲେ । ଭାଲୁଟି ଆସି ତାଙ୍କୁ ନପାଇ ଶୁଖିଲା ଲାଉକୁ ମୁଣ୍ଡାଇ ଗିଳିଲା । ବାଟରେ ଯେତେ କୋଳି ଓ ଫଳ ପାଇଲା, ସେସବୁ ତୋଳି ଲାଉ ଭିତରକୁ ପକାଇଦେଲା । ଯେମିତି କୋଳି ଓ ଫଳ ଲାଉ ଭିତରେ ପଡ଼େ, ଟିପା ଟିପି ତାକୁ ଖାଇଦିଅନ୍ତି । ଭାଲୁ ଭାବିଲା—"ଏ ତ ଆଶ୍ଚର୍ଯ୍ୟ କଥା । ଏତେ ଫଳ କୋଳି ତୋଳି ପକାଉଛି, ଲାଉ ଯେଉଁ ଖାଲିକୁ ସେଇ ଖାଲି ।" ଭାଲୁ ତ ବୋକା । କାହିଁକି ଲାଉ ପୂର୍ଣ୍ଣ ହେଉନାହିଁ, ସେ ବିଷୟରେ ସେ ଅନୁସନ୍ଧାନ ବି କଲା ନାହିଁ । ପେଟ ପୂର୍ଣ୍ଣ ପରେ ଟିପା ତା'ର ଖାଇବା ବନ୍ଦ କଲା ନାହିଁ । ଶେଷକୁ ତାର ପେଟ ଫାଟିଗଲା । ଏହା ଏପରି ଶବ୍ଦ କଲା ଯେ ଭାଲୁ ଉପରେ ଘୁନଥା ହୋଇଗଲା । ଲାଉଟିକୁ ଫିଙ୍ଗି ପ୍ରାଣଭୟରେ ପଳାଇଲା ।

●

# ପୃଥିବୀର ଲୋକକଥା

(୧) ଭିଏତ୍‌ନାମ (୨) ଲାଦାଖ-୧ (୩) ଲାଦାଖ-୨ (୪) ପଞ୍ଜାବ-୧ (୫) ପଞ୍ଜାବ-୨ (୬) ପଞ୍ଜାବ-୩ (୭) ପଞ୍ଜାବ-୪ (୮) ପଞ୍ଜାବ-୫ (୯) ଉତ୍ତର ପ୍ରଦେଶ -୧ (୧୦) ଉତ୍ତର ପ୍ରଦେଶ -୨ (୧୧) ପଞ୍ଜାବ-୬ (୧୨) ଉତ୍ତର ପ୍ରଦେଶ-୩ (୧୩) ପଞ୍ଜାବ-୭ (୧୪) ଉତ୍ତର ପ୍ରଦେଶ -୪ (୧୫) ମଧ୍ୟ ପ୍ରଦେଶ -୧ (୧୬) କାଶ୍ମୀର-୧ (୧୭) ଆସାମ-୧ (୧୮) କାଶ୍ମୀର -୨ (୧୯) କାଶ୍ମୀର-୩ (୨୦) ଇହୁଦୀ-୧ (୨୧) ହିମାଚଳ ପ୍ରଦେଶ-୧ (୨୨) ଆସାମ-୨ (୨୩) ଶ୍ରୀଲଙ୍କା-୧ (୨୪) ଋଷିଆ-୧ (୨୫) ଇହୁଦୀ-୨ (୨୬) ସାନ୍ତାଳ-୧ (୨୭) ଇଟାଲୀ-୧ (୨୮) ମଧ୍ୟପ୍ରଦେଶ-୨ (୨୯) ଶ୍ରୀଲଙ୍କା-୨ (୩୦) ସାନ୍ତାଳ-୨ (୩୧) ସାନ୍ତାଳ-୩ (୩୨) ସାନ୍ତାଳ-୪ (୩୩) ସାନ୍ତାଳ-୫ (୩୪) ସାନ୍ତାଳ-୬ (୩୫) ସାନ୍ତାଳ-୭ (୩୬) ନେପାଳ -୧ (୩୭) ହରିଆନା-୧ (୩୮) ସାନ୍ତାଳ-୮ (୩୯) ସାନ୍ତାଳ-୯ (୪୦) ସାନ୍ତାଳ-୧୦ (୪୧) ସାନ୍ତାଳ-୧୧ (୪୨) ସାନ୍ତାଳ-୧୨ (୪୩) ସାନ୍ତାଳ-୧୩ (୪୪) ସାନ୍ତାଳ-୧୪ (୪୫) କଛ-୧ (୪୬) ନେପାଳ-୨ (୪୭) ତିବ୍ବତ-୧ (୪୮) ଇହୁଦୀ-୩ (୪୯) ଇହୁଦୀ-୪ (୫୦) ଜାପାନ-୧ (୫୧) ତାମିଲନାଡୁ-୧ (୫୨) ତାମିଲନାଡୁ-୨ (୫୩) ତାମିଲନାଡୁ-୩ (୫୪) ତିବ୍ବତ-୨ (୫୫) ଫିଲିପାଇନ୍‌-୧ (୫୬) ଫିଲିପାଇନ୍‌-୨ (୫୭) ଚୀନ୍‌-୧ (୫୮) ଫ୍ରାନ୍‌ସ-୧ (୫୯) ଫ୍ରାନ୍‌ସ-୨ (୬୦) ସ୍କଟଲ୍ୟାଣ୍ଡ-୧ (୬୧) ଇହୁଦୀ-୫ (୬୨) ହିମାଚଳ ପ୍ରଦେଶ-୨ (୬୩) ଆସାମ୍‌-୩ (୬୪) ହିମାଚଳ ପ୍ରଦେଶ-୩ (୬୫) ଶ୍ରୀଲଙ୍କା-୩ (୬୬) ମିଆଁମାର-୧ (୬୭) ମିଆଁମାର-୨ (୬୮) ଇରାନ୍‌-୧ (୬୯) ଚୀନ୍‌-୨ (୭୦) ମଧ୍ୟପ୍ରଦେଶ-୩ (୭୧) କେରଳ-୧ (୭୨) ଚୀନ୍‌-୩ (୭୩) ରାଜସ୍ଥାନ-୧ (୭୪) କେରଳ-୨ (୭୫) ରାଜସ୍ଥାନ-୨ (୭୬) ରାଜସ୍ଥାନ୍‌-୩ (୭୭) ମିଆଁମାର-୩ (୭୮) ହରିଆନା-୨ (୭୯) ମିଆଁମାର-୪ (୮୦) ସାଉଦି ଆରବ ଓ ଆଲଜେରିଆ (୮୧) ଚୀନ୍‌-୪ (୮୨) ଚୀନ୍‌-୫ (୮୩) ଚୀନ୍‌-୬, (୮୪) ଇରାକ୍‌-୧ (୮୫) ଭାରତ-୧ (୮୬) ଋଷିଆ-୨ (୮୭) ଋଷିଆ-୩ (୮୮) ଋଷିଆ-୪ (୮୯) ଇରାନ୍‌-୨ (୯୦) କଛ-୨ (୯୧) କୋରିଆ-୧ (୯୨) କୋରିଆ-୨ (୯୩) ଇରାକ୍‌-୨ (୯୪) କଛ-୩ (୯୫) କଛ-୪ (୯୬) ଆସାମ୍‌-୪ (୯୭) ଇଣ୍ଡୋନେସିଆ-୧ (୯୮) ତେଲଗୁ ଦେଶ -୧ (୯୯) ଉତ୍ତର ଭାରତ-୧ (୧୦୦) ସିରିଆ-୧ (୧୦୧) ଜର୍ମାନ୍‌-୧ (୧୦୨) ଉତ୍ତର ଭାରତ-୨ (୧୦୩) ଜର୍ମାନ୍‌-୨ (୧୦୪) ଗ୍ରୀକ-୧ (୧୦୫) ଉତ୍ତର ଭାରତ-୩ (୧୦୬) ମରକୋ-୧ (୧୦୭) ଲୁସାଇ (୧୦୮) ଲାଖେର (୧୦୯) ପାଙ୍ଗି (୧୧୦) ମିଜିର (୧୧୧) ଖାସି ଜୟେଣ୍ଟିଆ (୧୧୨) ଢାଚାରୀ-୧ (୧୧୩) ଆସାମ୍‌-୫ (୧୧୪) ହିମାଚଳ ପ୍ରଦେଶ-୪ (୧୧୫) ହିମାଚଳ ପ୍ରଦେଶ-୫

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**, ପୋ: ଦାଘାଲ, ଜିଲ୍ଲା-ପୁରୀ

ସି.ଡି.ଏ. ସି-୩୨ ( ସେକ୍ଟର-୭ ), କଟକ-୧୪